# କଥା ଓ କାହାଣୀ

**( For detailed Study )**

For H. S. C. Examination, 1961
&
H. S. S. C. Examination, 1961 and 1962.



ସମ୍ପାଦକ

ନୂତନ ମୁଦ୍ରଣ

୧୯୫୮


ପ୍ରକାଶକ

ମୂଲ୍ୟ ୪୧୨

ଏକଠକ୍ସା ପରୁଣା ନୂଆ ମଞ୍ଚସା

# ସୂଚିପତ୍ର

# କଥା ଓ କାହାଣୀ

## ମାଡ଼ହାଣ୍ଡି କଥା

ଏକ ଦେଶରେ ଗୋଟିଏ ଚକୁଳିଆପଣ୍ଡା ଥାଏ, ସେଇଟି ଭାରି ଗରିବ । ସେ ମାଅଟିଏ ପୁଅଟିଏ । ପୁଅ ନିତି ଭିକ ମାଗିଯାଏ । ଛଅ ଗାଆଁ ଗଲେ ସେରେ ଅଣେ, ନଅ ଗାଆଁ ଗଲେ ସେରେ ଅଣେ । ଇମିତିକା ଭିକ ମାଗି କରି ଯାହା ଅଣେ, ସେଥିରେ ଅପଣା ପେଟ ପୋଷେ । ମହାପ୍ରଭୁଙ୍କ ମାୟା ତ, ଦିନେ ସେ ଚକୁଳିଆ ପଣ୍ଡା କେତେ ଅଡ଼ ବୁଲିଲା ଯେ, ସେରକ—କଥା ତେଣିକି ଥାଉ, ତାକୁ ପୋଷେ ଗୁଣ୍ଡିଲ ସୁଦ୍ଧା ଭିକ ମିଳିଲା ନାହିଁ । ଲୋକେ ଭିକ ଦେବେ କଅଣ ? ବେଳକୁ ତାକୁ ଗାଁ ପିଲାଏ ସବୁ ଠେକା ବୋଲିକି ଲଦି ମାଡ଼ମାରି ତଡ଼ିଦେଲେ । ପଛକୁ ଚକୁଳିଆ ପଣ୍ଡା ବିଚାରିଟି କାନ୍ଦିବୋବେଇ ପଳେଇ ଅଇଲା । ସୋଧ୍ ପଶ୍ଚିମ ଅଡ଼କୁ ଗଲା, ବିଚାରିଲା ଅଉ ଏ ନିଲଜ ମୁହଁ ଦେଖେଇବାକୁ ଘରକୁ ଯିବନାହିଁ । ଯୁଆ ବଗୁର ଗୈରକୁ ମାନକରି

ଖପରରେ ଗୋଇଲ ଭଳିଆ କାନ୍ଦରେ ଛୁଞ୍ଚା ଯାଉଁଳାଟିଏ ପକେଇ ଯାଉଥାଏ । ଯାଉଁ ଯାଉଁ ଖଣ୍ଡେଦୂରରେ ଦେଖିଲାବେଳକୁ ଗୋଟିଏ ଉତ୍ତମ ସୁନ୍ଦର ପଦ୍ମ ପୋଖରୀଟିଏ । ସେଥିରେ କଳା ଭଅଁର ଭଳି ଅଗାଧ ପାଣି । ପୋଖରୀ ଗୁହାପାଟଯାକ ଶଙ୍ଖମଲମଲ ପଥରରେ ପାହାଚ ବସିଛି । ସ୍ତ୍ରୀର ତ ସେତେବେଳେ ଶୋକଶୋଷରେ କରଡ଼ି ଜଳୁଥାଏ । ଏ କଅଣ କରିବ ? ତାକୁ ଅଉ ବୁଦ୍ଧିବାଟ ଦିଶୁ ନ ଥାଏ । ଏ ପାଣିକି ଦେଖିଲାପରି ସ୍ତ୍ରୀ ମନରେ ଭାରି ଲୋଭ ହେଲା । ଜୀବନ ବିକଳରେ ପାଣିକୂଳ ପାହାଚ ଉପରେ ଲଥକିନା ବସିଗଲା ଦେଖିଲା ଯେ କାଚକେନ୍ଦୁ ଭଳିଆ ପାଣି ମୁନ୍ଦକ ହୋଇଛି, ସାତତାଳ ପାଣିରେ ରୂପାପାତିଆ ଟିକିଏ ପକେଇଦେଲେ ଉପରକୁ ଫୁଟି ଜକ ଜକ ଦିଶିବ ।

ଚକୁଳିଅପଣ୍ଡା ସେ ପାଣିରୁ ଚଳ ଚଳ କରି ତା ଡାହାଣ ହାତରେ ଧରୁଥାଏ, ଏଣେ ମନକୁ ବାଆଁରେଇବା ପାଇଁ ମୁହଁରେ ମୁହଁରେ କହି ହଉଥାଏ:— ଭାତ ଖାଉଁ, ଡାଲି ଖାଉଁ, ଦୁଧ ଖାଉଁ, ମହୁର ଖାଉଁ, ଅମ୍ବିଳ ଖାଉଁ, ଖିରି ଖାଉଁ, କାକରା ଖାଉଁ, ନାନାମାନ ଖାଉଁ, ପୋଡ଼ପିଠା ଚକୁଳି ଖାଉଁ, ଇମିତି ଗୋଟିଏ ଦରବ ନାଆଁ ଧରୁଥାଏ, ଚଳେ ଲେଖାଏଁ ପାଣି ପିଉଥାଏ । ସେ ପୋଖରୀରେ ଗଙ୍ଗାମାତା ଥାଆନ୍ତି । ଚକୁଳିଅ ପଣ୍ଡାର ଡାକ ତାଙ୍କ କାନରେ ବାଜିଲା । ଗଙ୍ଗାମାତା ତ ଜଉଗଲା ଚଢ଼େଇର ପେଟକଥା ଜାଣି ପାରନ୍ତି । ସେ ତ କାହା ବିକଳ ସହି ପାରନ୍ତି ନାହିଁ । ସ୍ତ୍ରୀ ଡାକ ଶୁଣି ମନେ ମନେ ବିଚାରିଲେ, ଏ ଚକୁଳିଅପଣ୍ଡାଟି ପିନା ଭୋକବିକଳରେ ଇମିତି ହଉଚି । ଦେବତାଙ୍କୁ ଅବା କେଉଁ ଦରବ ଅପୁରୁବ ? ସେ କଅଣ କଲେ ନା, ଚକୁଳିଅପଣ୍ଡା ଯେତେକ ଦରବ ନାଆଁ ଧରି ଚୋଳାଏ ଚୋଳାଏ ପାଣି ପିଉଥାଏ, ସେତେକ ବାରିକ ବାରିକ କରି

ପନାଟିମାନଙ୍କରେ ଭରଭର କରି ଗୋଟିଏ ହାଣ୍ଡିରେ ସଜାଡ଼ିଲେ, ହାଣ୍ଡି ଉପରକୁ ତେଲୁଣୀଟିଏ କଣ୍ଠିକାଣ୍ଠି କରି ଘୋଡ଼େଇ ଦେଲେ, ଏ ଚକୁଳିଅପଣ୍ତ୍ରାଟି ଯୋଉଁଠେଇଁ ବସିଥିଲା, ସେଇଠେଇଁକି ଡୁନ କରି ଭସେଇ ଦେଲେ । ହାଣ୍ଡି ଭାସି ଭାସିକା ଯ୍ୟା ପାଖରେ ଅଟି ଲାଗିଗଲା । ଚକୁଳିଅପଣ୍ତ୍ରା ଏ ହାଣ୍ଡିକି ଦେଖି ଭାରି ଅଚମ୍ବିତ ହେଲା, କହିଲା, ଏ ହାଣ୍ଡିଟି ଶୂନ୍ୟରୁ ଏଠେଇଁକି କୁଆଡ଼ୁ ଭାସି ଅଇଲା ? ଏଥେରେ କଅଣ ଅଛି ଦେଖେଁ । ଯ୍ୟା ବର୍ତ୍ତ୍ୟ ସେ ତେଲୁଣୀଟିକି କାଢ଼ି ଦେଲାବେଳକୁ ତା ଭିତରେ ଦ୍ରବ୍ୟ ସବୁ ଘିଅଅନ୍ନ, ଡାଲି, ମହୁର, ଅମ୍ବିଳ, କ୍ଷୀରି, ପିଠା ଭଳିକ ଭଳି ଖଞ୍ଜା ହୋଇଛି । ସେଥିରୁ ସବୁ ବାସ ବାହାରୁଛି । ଯ୍ୟା ଦେଖି ଅନନ୍ଦରେ ତାକୁ ଅଉ ବୁଦ୍ଧିବାଟ ଦିଶୁ ନ ଥାଏ । ସେ ହାଣ୍ଡିକି ପାହାଚ ଉପରକୁ ଉଠେଇ ଅଣିଲା, ତାକୁ ତ ଭାରି ଭୋକ କରୁଥାଏ; ସେ ହାଣ୍ଡିରୁ ପଦାର୍ଥଯାକ କାଢ଼ି ପେଟପୂରି କରି ଖାଇଲା । ଜଣେ ମଣିଷ ତ, କେତେ ଇମିତି ଖାଇବ ? ଯେତେକ ଖାଇବାର ଖାଇଲା, ଦେଖିଲା ବେଳକୁ ସେ ପଦାର୍ଥରୁ କଣେ ସୁଦ୍ଧା ସରି ନ ଥାଏ । ଯେତେକ ବଳିଲା ସେତକ ଗୋଟିଅଗୋଟି କରି ସେ ହାଣ୍ଡିରେ ପୁରେଇଲା, କହିଲା, ଯ୍ୟାକୁ ମୁଁ ଘରକୁ ନେବି ଯେ ମୋ ମାଅ ଖାଇବ, ବାକୀ ଯାହା ବଳିବ ଫେର୍ ଦୋଓଡ଼ା ଖାଇବ ।

ଖାଲି ହାତରେ ସିନା ଘରକୁ ଫେରିବ ନାହିଁ ବୋଲି ରୁଷି କରି ଘରୁ ବାହାରି ଯାଉଥିଲା । ବର୍ତ୍ତମାନ ଏତକ ଯିମିତି ହାତରେ ପଡ଼ିଲା ସେମିତି ଯ୍ୟା ମନ କୁଣ୍ଢେ ମୋଟ ହୋଇଗଲା । ହାଣ୍ଡିଟିକି ମୁଣ୍ଡେଇ ଲମ୍ବେ ଲମ୍ବେ ଘରକୁ ମୋହିଁଲା । ଘରେ ପହଞ୍ଚିଲାବେଳକୁ ମାଅ ଯାଇଥାଏ ଗାଆଁ ଭିତରକୁ ଦୁଃଖ କରିବାକୁ । ଯ୍ୟେ ସେ ହାଣ୍ଡିଟିକି ହାଣ୍ଡିଶାଳ ଶିକା ଉପରେ ସାଇତି ଦେଲା, ଘରେ ଟିଣ୍ଡେ ମସିଣାପାରି

ଶୋଇଲା । ମାଆ ଗାଆଁରୁ ଦୁଃଖଧନ୍ଦା କରି ପୋଟେ ଖୁଦ ପଣତ-କାନିରେ ବାନ୍ଧି ଘରେ ଆସି ପହଞ୍ଚି ଦେଖେ ତ ପୁଅର ପେଟ ଟୁମ୍ ଟୁମ୍ ଦିଶୁଚି, ପୁଅ ଅଚେତା ନିଦରେ ଘୁଙ୍ଗୁଡ଼ି ମାରୁଛି, ହାଣ୍ଡିଶାଳ କବାଟ ଫିଟେଇ ଦେଖିଲା ବେଳକୁ ଶିକା ଉପରେ ହାଣ୍ଡିଟିଏ । ହାଣ୍ଡିଟିକୁ ଓହ୍ଲେଇ ପଲମ କାଢ଼ି ଦେଖେ ତ ହାଣ୍ଡି ଭିତରେ ଦିବ୍ୟ ସୁବାସ ଘିଅଅନ୍ନ, ଛଅ ତିଅଣ, ନଅ ଭଜା, ଗୁଡ଼ ପିଠା ଭରିଭରି । ବୁଢ଼ୀ ତ ଭୋକରେ ତହଳବିକଳ ହଉଥିଲା, ତାକୁ ଏବେ କୋଟିନିଧି ମିଳିଗଲା । ସେ ଅଉ ପୁଅକୁ ଉଠେଇବ କଅଣ ? ବାଡ଼ିକୁ ଯାଇଁ ବେଏଁ ଲମ୍ବର ଖଣ୍ଡେ କଦଳୀପତର କାଟି ଆଣିଲା, ହାଣ୍ଡିରୁ ଟଗୋଟି ଗୋଟି କରି ସବୁ ପଦାର୍ଥ ବାଢ଼ିଲା, ଯେତେକ ମନ ଇଚ୍ଛା କରି ଖାଇଲା, ଅଉ ଯାହା ବଳିଲା ତାକୁ ହାଣ୍ଡିରେ ପୁରେଇ ଶିକାରେ ରଖିଦେଲା । ପୁଅ ଶୋଇଥିଲା, ଉଠି ମାଆକୁ ସବୁ କଥା କହିଲା । ଫେର୍ ଉପର ଓଳି ହାଣ୍ଡିରେ ଯାହା ଥିଲା ମାଆ ପୁଅ ଖାଇ ଅଟିଳ୍ ହୋଇଗଲେ ।

ରାତିରେ ଶୋଇଲାବେଳେ ବୁଢ଼ୀ ପୁଅକୁ ବୁଦ୍ଧି ବତେଇ ଦେଲା, ଅରେ ପୁତ, ଏତେ ମିହନ୍ତ କରି ଛଅ ଗାଁ ନଅ ଗାଁ ବୁଲିବୁ କୁଆଁ ? କାଲି ସକାଳୁ ଫେରି ଯାଇ ପୋଖରୀ କୂଳରେ ବସ, ଦେଖିବା ଦେଖି କଅଣ ହଉଚି ? ମାଆ ପୁଅ ଯୁଗ୍ମା ବିଚାରିବିଚାରି ହୋଇ ଶୋଇଲେ । ସକାଳୁ ଟକୁଳିଆ ପକ୍ଷୀ ତ "କାଳିଆ ସୁଅଦ ପାଇଛୁ, ନା ସକାଳୁ ଉଠି ଧାଇଁଛୁ" ବଡ଼ ଫଟପଟିରୁ ଉଠି, ଗାଧୋଇ, ଚିତା ଚଇତନ କାଟି ସିଧାଏ ସିଧାଏ ଯାଇ ଏକଦମ୍ ପଦ୍ମପୋଖରୀ କୂଳରେ ହାଜର । ଫେର୍ କାଲି ଯିମିତି ଭାତ ଖାଉଁ, ଡାଲି ଖାଉଁ, ତିଅଣ ଖାଉଁ କରୁଥିଲା ଅଜ ସିମିତି ଚଳ ଚଳ କରି ପାଣି ପିଉଥାଏ, ଏଣେ ସିମିତି କରୁଥାଏ । ସତକୁ ସତ, କାଲି ପରିକା ହାଣ୍ଡିଟିଏ ଭାସି

ଅସି ତା ପାଖରେ ଲାଗିଲା । ସେ ଅପେ ଯାହା ଖାଇବାର ଖାଇଲା, ବାକୀ ଯାହା ବଳିଲା ସେତକ ଘରକୁ ଆଣି ଶିକା ଉପରେ ରଖିଦେଲା । ମାଆ ଗାଆଁକୁ ବୁଲିବାଲି ଅସି ଖାଇଲା । ଫେର୍ ବୃଡକ ମାଆ ପୁଅ ଦହେଁ ଚୋଲେ ଲେଖାଏଁ ମାଇଲେ । ଇମିତ ନାତ ପୁଅ ହାଣ୍ଡିଟିମାନ ଅଣେ, ମାଆ ପୁଅ ଦହେଁ ସେତକ ଖାଇ ପିଇ ଖଇର ହାକୁଟି ମାର ଗଡ଼ଗଡ଼ଜ ଥାଆନ୍ତି । ପୁଅ ତ ଦେଖିଲା ଯେ, ନାତ ଫୋକଟରେ ତାକୁ ଦବ୍ୟ ସୁନ୍ଦର ଜୋଉଁ ଭୋଜନ ମିଳିଲା, ମାଆ ଦେଖିଲା ଯେ, ବସିଲାଠେଇଁ ତ ତାକୁ ଅଧାର ମିଳିଲା । ପୁଅ ଅଉ ଭିକ ବି ମାଗି ଗଲା ନାହିଁ, ମାଆ ବି ଦୁଃଖଧନ୍ଦା କରିବାକୁ ଗଲା ନାହିଁ, କି କୁଟା ଖଣ୍ଡିକ ଦଖଣ୍ଡ କଲା ନାହିଁ । ଇମିତ ମାଆ ପୁଅଙ୍କ ମୁହଁ ତ ମାଗଣା ଭାତରେ ଲାଗି ଯାଇଥାଏ ।

ଏଣେ ଗଙ୍ଗାମାତା ବିଚ୍ଚାର କଲେ ଯେ, ଏ ମାଅ ପୁଅ ତ ନାଖଟୁ ହୋଇ ବସିଲେ, କିଛି କାମ କଲେ ନାହିଁ, ୟାଙ୍କ ଦେଖାଦେଖି ସଂସାର ଯାକ ସମସ୍ତେ ତ କର୍ମକୋଢ଼ିଆ ହୋଇଯିବେ, ଅଉ ଦୁଃଖଧନ୍ଦାକୁ ତ କେହି ଅଦରିବେ ନାହିଁ, ୟାଙ୍କ ମୁହଁ ନ ଭାଙ୍ଗି ଦେଲେ ହବ ନାହିଁ । ଏଇତା ପାଇଁ ଗଙ୍ଗାମାତା କୁଟଟିଏ ଭେଇଲେ । ଦିନକର କ'ଣ ହୋଇଛି ନା, ଚକୁଳିଅ ପଣ୍ଡା ନାତ ଯିମିତ ଯାଏ, ସେଦିନ ବଡ଼ ସକାଳୁ ଉଠି ସ୍ନାହାନପ୍ରକାର କରି ସେ ପଦ୍ମପୋଖରୀକି ଗଲା, ପାହାଚରେ ବସି ଯିମିତ ନାତ କରେ ସିମିତ ସେଦିନ କଲା । ପାଣି ଚଳେ ଚଳେ ପିଉଥାଏ, ଏଣେ ମିଛରେ ମିଛରେ କହୁ ହେଉଥାଏ, ଭାତ ଖାଉଁ, ହାପୁ ଖାଉଁ, ତଅଣ ଖାଉଁ, ସାକର ଖାଉଁ, ଖେଚେଡ଼ି ଖାଉଁ, ଇଣ୍ଡୁରି ଖାଉଁ ଇମିତ କହୁଥାଏ । ମନେ ମନେ ବିଚ୍ଚାର କରୁଥାଏ, ନାତ ଯିମିତ ହାଣ୍ଡିଟିଏ ଭାସି ଅସେ, ସିମିତ ଭାସିଅସି ଅଜ ମୋ ପାଖରେ ଲାଗିଯିବ ଯେ,

ମୁଁ ସୁନାପୁଅ ଭଳିଆ ତାଙ୍କୁ ନେଇ ମାଆ ପୁଅ ଦହେଁ ଖାଇ ହେଣ୍ଟି ମାରି ବୁଲୁଥିବୁଁ । ଗଙ୍ଗାମାତା ବସୁରଲେ ଦେଖ, ଯୁାଉ କେଡ଼େ କଥା ! ମୁଁ ଯୁା ବକଲ ସହ ନ ପାରି ଯୁାକୁ ଖାଇବାକୁ ଦେଲି ବୋଲି ମାଆ ପୁଅ ଦହେଁ ଇନ୍ଦ୍ରଚନ୍ଦ୍ର ମାନିବାକୁ ନାହାନ୍ତି । ଦହିଙ୍କି ଦହେଁ ଗଣ୍ଡିଟିମାନ ବାହାର କରି ବୁଲୁଛନ୍ତି । ଅଜ ପୁକାଟାଏ ଅଣ୍ଟା କରି ନ ଦେଲେ ଇସ୍ତେ ଚେତିବେ ନାହିଁ । ଗଙ୍ଗାମାତା ତ ସହଜେ ଦେବତା, ତାଙ୍କୁ ଅବା କୋଉ କଥା ଜବାର ଅଛି ? ଯୁା ବସୁରି ହାଗ ଭମ ଭମ ହୋଇ ହାଣ୍ଡିଟି ଭିତରେ ଗୁଣ୍ଡଏ ବଧା, ଗୃପୁଡ଼ା, କହୁଣୀ, ଗୋଇଠା, ଶମୁଟା, ଲେଡ଼ା, ଗ୍ରମ୍ପୁଡ଼ା, କାମୁଡ଼ା ଇମିତ ଯେତେକ ମାଡ଼ ଏ ସଂସାରରେ ଅଛି, ସବୁ ପୁରେଇଲେ । ହାଣ୍ଡି ଉପରେ ତେଲୁଣୀଟି କଣ୍ଟିକାଣ୍ଟିକରି ନିବୁଜୁକରି ଧୋଡ଼େଇଦେଲେ, ଏ ଚକୁଳିଆ ପଣ୍ଡା ପାଖକୁ ଭସେଇ ଦେଲେ । ହାଣ୍ଡିଟି ଭସି ଭସିକା ଆସି ଯୁା ପାଖରେ ଲଗିଲା ।

ସ୍ବେ ତ ମନେ ମନେ ଅଗରୁ ମିଠେଇ ଖାଇ ବସିଛି । ହାଣ୍ଡିଟିକ ମୁଖକୁ ଟେକ ନେଇ ତେଲୁଣୀଟିକ କାଢ଼ି ଦେଲା ବେଳକୁ ହେଲା ତ ତା ଉପରେ ମାଡ଼ ବୃଷ୍ଟି । ଗୁଞ୍ଚା ଗୃପୁଡ଼ା ଉପରେ ଗୃପୁଡ଼ା, ବଧା ଉପରେ ବଧା, ତା ଉପରେ ଗୋଇଠା, ତା ପଛକୁ ଗ୍ରମ୍ପୁଡ଼ା, କାମୁଡ଼ା, ଇମିତ ଖାଲି ତା ଅଷ୍ଟାଙ୍ଗ ଶରୀରଯାକ ଦୁକ୍କୁଦାମ୍ ଧୁପ୍‌ଧାପ୍ ଲଦ ହୋଇ ଯାଉଥାଏ । ଚଟକଣା ଖାଇ ଗାଲକୁ ଅଉଁଶି ପକେଇଲା ବେଳକୁ ପିଠିରେ ଦୁଲୁ କରି ଗୋଟାକେତେ ବଧା ବସୁଥାଏ ! ଡହଳ ବକଳ ହୋଇ ପିଠି ଅଉଁଶିଲା ବେଳକୁ ଖୁଅମୁଣ୍ଡିରେ ଦ ଗୋଇଠା । ବେଳକୁ ବେଳ ସମୁଦ୍ର ଜୁଆର ମାଡ଼ ଅଇଲା ଭଳିଆ ମାଡ଼ରେ କୁଅଟୁଅ ଉଡ଼ିଗଲା, ଯୁାକୁ ସେତେବେଳକୁ ଗୋଟାଏ ବୁଦ୍ଧି ପଇଟିଗଲା । ଏ କ'ଣ କଲା

ନା, ଝଂଝପଟ ଜୀବନ ବିକଳରେ ଏ ହାଣ୍ଡି ଉପରେ ତେଲୁଣୀଟାକୁ ଘୋଡ଼େଇ ପକେଇଲା । ଯିମିତି ଘୋଡ଼େଇ ପକେଇଛି ସିମିତି କିଏ ବାଣୀ ଦେଲା ଭଳିଆ ଏ ମାଡ଼ ବୃଷ୍ଟି ଥମ୍ବିଗଲା । ଏ ଟିକିଏ ନିଶ୍ୱାସ ମାରିଲା । ସେତେବେଳକୁ ସ୍ତ୍ରୀ ଦେହ ହାତ ମାଡ଼ରେ ଗଡ଼ ଭଳିଆ ଫୁଲି ଗଲାଣି । ଏ ରାଗରେ କମ୍ପମାନ ହଉଥାଏ । କିଏ ମାରିଲା ବୋଲି ଦେଖିଛି ଯେ, କାହା ଉପରେ ଦାଉ ସାଧିବ ? "ଶାଶୁ ମାରୁଥାଏ ବୋହୂକୁ, ବୋହୂ ଘୁରି ହୋଇ କାହାକୁ ମାରିବ ମାରୁଥାଏ ଚୁଲି ମୁହଁକୁ" ସିମିତି ଚକୁଳିଆ ପଣ୍ଡା ତା ମା ଉପରେ ରାଗରେ ଜରଜର ହଉଥାଏ, ତା ମନକଥା ମନରେ ଥାଏ, ସେ ହାଣ୍ଡିଟିକି ଉଠେଇ ଘରକୁ ଚାଲେଇଲା । ନିତି ଯିମିତି ନେଇ ଶିକା ଉପରେ ଥୋଇଦିଏ, ସିମିତି ହାଣ୍ଡିଟିକି ଶିକା ଉପରେ ରଖିଦେଲା, ଭିକ ମାଗିବାକୁ ଗଲା ବାହାରି ।

ତା ମାଆ ତ ଘରେ ନ ଥାଏ । ଏବେ ତ ପୁଅ ହାଣ୍ଡି ଆଣିଲା ଦିନଠଉଁ ମାଆ ଜମାରୁ ଦୁଃଖ ଧନ୍ଦା କରିବାକୁ ନାହିଁ । ଗାଆଁ ଯାକ ଅଷ୍ଟଦଣ୍ଡ ପାଠ ଭଳିଆ ଦାଣ୍ଡି ମାରୁଥାଏ । ଘରକୁ ଆସି ଶିକାରୁ ହାଣ୍ଡି କାଢ଼ି ଭୋଜନ ମାରୁଥାଏ । ଆଜି ଆସି ଦେଖିଲା ବେଳକୁ ପୁଅ ଘରେ ନାହିଁ, ଘର ଭିତରକୁ ପଶି ଚାହିଁଲା ବେଳକୁ ଶିକାରେ ହାଣ୍ଡିଟି ନିତି ଭଳିଆ ଥୁଆ ହୋଇଛି । ସେ ତ ମାଇପି ଲୋକ, ଏତେ ଛନ୍ଦମନ୍ଦ ଅବା କାହୁଁ ଜାଣିବ ? ହାଣ୍ଡିଟିକି ଶିକାରୁ ଥିର କରି ଓହ୍ଲେଇ ଆଣି ଯିମିତି ତେଲୁଣୀଟିକି ସେ ହାଣ୍ଡି ମୁହଁରୁ କାଢ଼ିଛି ଅଜ ବୁଢ଼ୀ ଯାଏ କୁଆଡ଼େ । ହେଲା ତ ମାଡ ଉପରେ କୁଆପଥର ଛେଚିଲା ଭଳିଆ ମାଡ଼ ! ଦୁଲ୍‌ଦାଲ୍ ଗୋଟାକ ଉପରେ ଗୋଟେ ବାଜି ଯାଉଥାଏ । ଇଲୋ ବାପ ଲୋ ! ମରି ଗଲି ଲୋ, ହେଲା ବେଳକୁ ପିଠିରେ ଫେର୍

ଧଇଁଟା ବସୁଥାଏ । ଅଲୋ ମାଆ ଲୋ, ମରି ଗଲି ଲୋ । ହେଲା ବେଳକୁ କଙ୍କାଳ ବାହୁରେ ପୁଣି ପୁଞ୍ଜାଏ ବସି ଯାଉଥାଏ । ଏଣେ ଶୂନ୍ୟ ଶବଦ ହଉଥାଏ, କେତେ ଖାଇବୁ ଖାଅ, ଖାଅ ଷୀର ବୋଲି ବଧାଏ, ଖାଅ ପିଠା ବୋଲି ଗୋଇଠେ, ଖାଅ ମହୁର ବୋଲି ବ୍ରହ୍ମ ଚାପୁଡ଼ାଏ । ବୁଢ଼ୀ ବିକଳରେ ଦହ ହାତ ଅଞ୍ଜଳି ପକଉଥାଏ, ଏଣେ ମଇସି ଭଳିଆ ଛଟପଟ ହୋଇ ଗଡ଼ି ଯାଉଥାଏ । ପଛକୁ ବୁଢ଼ୀକି ଗୋଟାଏ ବୁଦ୍ଧି ଦିଶିଗଲା । ବୁଢ଼ୀ ଉଠିପଡ଼ି ସେ ପଲମଟାକୁ ହାଣ୍ଡି ଉପରେ ଉଗୁଡ଼େଇ ପକେଇଲା । ହାଣ୍ଡି ଉପରେ ଡାଙ୍କଣୀ ପଡ଼ିଗଲାରୁ ବୁଢ଼ୀ ଉପରେ ମାଡ଼ ଅସର ବନ୍ଦ ହୋଇଗଲା । ବୁଢ଼ୀ ଟିକିଏ ନିଶ୍ୱାସ ମାରିଲା, କହିଲା ଓହୋ ଆଜି ସକାଳୁ ଉଠି କାହା ମୁହଁ ଚାହିଁଥିଲି ? ଆଜି ପଗ ଦିନେ ମାଡ଼ ଖାଇଲି । ଯା ବିଚାରି ସେ ହାଣ୍ଡିକି ନେଇ ତା ବାଡ଼ିଆଡ଼ ଖତକୁଢ଼ ଗଦାରେ ଲଥକିନା ରଖିଦେଲା, ବାଡ଼ କବାଟ କିଳିଦେଇ ଘରେ ଆସି ମୁହଁ ମାଡ଼ିକରି ଶୋଇଲା । ହାଣ୍ଡିଟି ଉପରେ ପଲମ ଘୋଡ଼ିଆ ହୋଇଥାଏ । ସେଦିନ ଦଇବ ଯୋଗକୁ ରାତି ଅଧ ହେଲାଣି, ଗାଆଁଯାକ ସମସ୍ତେ ଖାଇ ପିଇ ନିର୍ଜନ ହୋଇ ଶୋଇ-ଲେଣି, ପଞ୍ଚାଏ ଚୋର କେଉଁ ଗାଆଁରୁ ସିନ୍ଦୁକଟାଏ ଚୋରେଇ ଆଣି ବାଣ୍ଟି କରିବେ ବୋଲି ବୁଢ଼ୀ-ବାରଦୁଆରେ ଆସି ବସିଲେ । ତାଙ୍କ ଭିତରେ ଭାଗ ବାଣ୍ଟ ବିଚାର ଲାଗିଛି ।

ଏହି ସମୟରେ ଜଣେ ଚୋରର ଆଖି ଏ ହାଣ୍ଡିଟି ଉପରେ ପଡ଼ିଲା । ସେ ବିଚାରିଲା, ଯା ଭିତରେ କଣ ଅଛି—ଦେଖନ୍ତେଇ । ଯା ବିଚାରି ସେ ହାଣ୍ଡିଟିକି ଖତଗଦାରୁ ଉଠେଇ ଆଣି ସବୁ ଚୋରଙ୍କ ମଝିରେ ଥୋଇଦେଲା । ଯିମିତି ସେ ପଲମଟିକି ଛାଡ଼ି ଦେଇଛି, ଆଉ ଏ ଚୋର ପଞ୍ଚାକ ଯିବେ କୋଉଗାଆଁକୁ ? ହେଲା ତ ସମସ୍ତଙ୍କ ଉପରେ ମାଡ଼ । ଠୁଙ୍କା ମାଡ଼, ଖାଲି ମାଡ଼,

ଫେର ଗୋଟୋଛବାଉଁଅ ମାଡ଼, ମାଡ଼ରେ ଚୋରୁ ଚଢ଼ଗଲେ । ଏ ଚୋରଯାକ ଆଜ ଟଙ୍କାଟୋକର ବାଣ୍ଟିବେ କଅଣ ? ମାଡ଼ରେ କଲେଇ ବଲେଇ ହୋଇ କଏ କୁଅଡ଼େ ଛଟିପିଟି ହୋଇ ପଳେଇ ଗଲେ, 'ବାଜ ଲୋ ! ବାଜ ଲୋ !' ହେଇ ପଳଉଥାନ୍ତି । ତାଙ୍କ ପଛେ ପଛେ ମାଡ଼ଯାକ ଗୋଡ଼େଇ ଛୁଞ୍ଚା କୋବ ପକାଉଥାଅନ୍ତି । ମାଡ଼ରେ ଧୂଳା ଉଡ଼ଯାଉଥାଏ । ଯେଉଁ ଚୋର ଗୋଟାକେତେ ପୂର୍ବ ଅଡ଼କୁ ପଳେଇଲେ, ତାଙ୍କୁ ଗୃଷ୍ଡ଼ା ଯାକ ଗୋଡ଼େଇ ଗୋଡ଼େଇ ଗଲେ । ଯେ ପଚ୍ଛିମକୁ ପଳେଇଲେ, ତାଙ୍କ ସାଙ୍ଗରେ ବଧାଯାକ ଗୋଡ଼େଇ ଗୋଡ଼େଇବା ଗଲେ, ଯେ ଉତ୍ତରକୁ ଗଲେ ତାଙ୍କୁ ଗୋଇଠାଯାକ ଗୋଡ଼େଇଲେ, ଯେ ଦକ୍ଷିଣକୁ ଗଲେ ତାଙ୍କ ସଙ୍ଗରେ ମୁଟୀଯାକ ଗଲେ । ଇମିତ ଇମିତ ବୁଢ଼ୀ ବାଉଅଡ଼ୁ ଘଉଡ଼କରେ ମାଡ଼ ଆଜ ଚୋରଯାକ ବ ଗଲେ, ଏଣେ ବୁଢ଼ୀ ତ ମାଡ଼ ଖାଇକର ତା ଅଷ୍ଟାଙ୍ଗଶରୀର ପଗ୍ରଶ ହେଇ ଜଧଉଥାଏ, ତାକୁ ଆଜ ରାତଯାକ ନିଦ ମାଡ଼ବାକୁ ନାହିଁ, ସେ ଘର ଭିତରେ କତରାରେ ପଡ଼ି ଏକଡ଼ ସେକଡ଼ ହେଉଥାଏ । ବୁଢ଼ୀ ଘର ଭିତରେ ଥାଇ ଗାଳିଯାଉ ଏ ସବୁ ବାଉଅଡ଼ର ରବସ୍ଥାଯାକ ଶୁଣୁଥାଏ ।

ଯିମିତ ଏ ଚୋରଯାକ ପଳେଇଲେ ବୁଢ଼ୀ ଉଠିକର ବାଡ଼ କବାଟକୁ ଧିଡ଼ୁକିନା ଫିଟେଇଲା, ଦେଖିଲାବେଳକୁ ତା ବାଡ଼ ପଦାଡ଼ରେ ସିନ୍ଦୁକଟିଏ ଥୁଆ ହୋଇଛି ! ବୁଢ଼ୀ ସେ ସିନ୍ଦୁକ ପାଖକୁ ଯାଇ ଥିର କିନା ସେ ସିନ୍ଦୁକ କବାଟକୁ ଟେକୁଥାଏ, କାଳେ ହାଣ୍ଡିରୁ ମାଡ଼ ବାହାରିଲା ଭଳିଆ ସେ ସିନ୍ଦୁକରୁ ନ ପୁଣି କିଛି ବାହାରେ ! ପଛକୁ ଦେଖିଲା ଯେ, ସେ ସିନ୍ଦୁକ ଭିତରୁ ଆଉ କିଛି ସୋରସାର ହେଉ ନାହିଁ । ସେଇଥିରୁ ସିନ୍ଦୁକକୁ ମେଲା କରି ଦେଖିଲା ବେଳକୁ ତା ଭିତରେ ହୀରା, ନୀଳା, ମୋତି, ମାଣିକ, ମହୁଡ଼, ଅସରପି, ଗହଣା-

ଗାଣ୍ଠି, ଝଙ୍କାଝୋକର, ସିନ୍ଦୁକେ ଭରଣ ହୋଇଛି । ସ୍ୱା ଦେଖି ବୁଢ଼ୀର ମାଡ଼ଦରଜ କୁଅଡ଼େ ଉଡ଼ିଗଲା । ବୁଢ଼ୀ ତ ଏକୁଟିଅ ସେ ସିନ୍ଦୁକ ଟେକ ପାରବ ନାହିଁ । ଘରୁ ପାଚଅଟିଏ ଅଣି ପାଚଅ ପାଚଅ କର ପୁଳ ପୁଳ କର ନଇଁ ନଇଁ କର ସିନ୍ଦୁକରୁ ଧନ ଦରବତକ ଘଣ୍ଟାଘଣ୍ଟ ବୋହି ଲଗିଲା । ଘଣ୍ଟ ଜାଙ୍ଗୁଲ୍ଲି ଜାଙ୍ଗୁଲ୍ଲି ହଜଚ, ପୁଅ ଅସି ପହଞ୍ଚିଗଲା । ମାଅ ପୁଅ ଅଜ କାଲର ମାଡ଼କଥା କ'ଣ କଥାଭାଷା ହେବେ କ ? ପୁଅକୁ ମାଅ ଏ ଧନ ଦଉଲତକ ଦେଖେଇଲା । ମାଅ ପୁଅ ଦହେଁ ଟେକାଟେକ କର ସିନ୍ଦୁକକୁ ଘର ଭିତରକୁ ଅଣିଲେ । ତହିଁ ଅରଦନ ସକାଳୁ ସେ ଅସରପିତକ ମାପିବେ ବୋଲ ବୁଢ଼ୀ ଅସି ଅମ ଘରୁ ଅମ ଛଅ ସେରଅ ଗଉଣୀଟି ମାଗି ନେଇଥିଲା ଯେ, ମୁଁ ମନେ ମନେ ପାଞ୍ଚିଲି, ସ୍ୱାଙ୍କର ତ ଅଇର ଖପର୍ ବଇର ବା, ସେ କଅଣ ମାପିବାକୁ ଗଉଣୀ ନେଲେ ମ ? ସ୍ୱା ବଗୃବ ଦହରୁ ବୁଦ୍ଧି କାଢ଼ି ଅମ ଗଉଣୀ ପେଟରେ ଟିକଏ ମହୁସିଠା ମାଡ଼ ଦେଇଥିଲି ଯେ, ବୁଢ଼ୀ ଅମ ଗଉଣୀ ଫେରେଇ ଦେଲାବେଳକୁ ଦେଖେଁ ତ ଗଉଣୀ ପେଟରେ ବନହଳଦୀ ଭଳ ଅସଲ ଜଇପୁରୀ ମଉଡ଼ଟିଏ ଲଗିଛି । ମୁଁ ତାକୁ ନେଇ ଅମ ଗୁରୁବାର ମାଣ ଦହରେ ରଖିଦେଲି । ଚକୁଳଅ ପଣ୍ଡା ଘରକୁ ବାଅଁର ବାଅଁର ହେଇ ବୁଲଗୁଲ ହୋଇକର ଚଲି । ମାଅ ପୁଅ ଦହଙ୍କି ଦହେଁ ମତେ ଅଜ ପାଟି ଫିଟେଇଲେ ନାହିଁ । ମୁଁ ତେଣୁ ଅସି ବଣିଅକୁ ଡକେଇ ସେ ମଉଡ଼କଟା ସୁନାରେ ପୁଅ, ଝିଅ, ନାତ, ନାତୁଣୀଙ୍କ ପାଇଁ କାନକୁ, ନାକକୁ, ବେକକୁ, ମୁଣ୍ଡକୁ, ଜାତ ଜାତକା ଅଳଙ୍କାର ଗଢ଼େଇଲି । ଘର ଦୁଅର କର ରହିଲି । ମୋ କଥାଟି ସଇଲା, ଫୁଲ ଗଛଟି ମଲା ।

---

## ପ୍ରୀତ ବିନୋଦ

( ଦୁଷ୍ଟପ୍ରୀତ )

ଏବେ ଦୁଷ୍ଟ-ପ୍ରୀତ ଯେଉଁରୂପେ ତାହା କହିବା ଶୁଣ । କ୍ଷେତ୍ରପାଳ ନାମେ ଏକ ଭୂମିଜ ଅଛି । ସେ ଭୂମିଜ ଅତ୍ୟନ୍ତ ବଳବନ୍ତ । ତା ଧନୁରେ ଗୁଣଦେଇ ଅମଣ୍ଡ କରିବାକୁ ସଂସାରରେ କେହି ନାହିଁ । ସେ ବାଣ ବିନ୍ଧିଲେ ମତ୍ତହସ୍ତୀ ପ୍ରାଣ ହରଇ । ସେ କ୍ଷେତ୍ରପାଳ ଅହିପୁର ନାମେ ପର୍ବତ, ତହିଁ ଘର କରିଥାଇ । ପଥରେ ଯିବା ମହାଜନମାନଙ୍କ ଠାରୁ ଧନ ରତ୍ନ ଛଡ଼ାଇ ନେଇ, ରାଜା ସମାନ ସମ୍ପଦ କରିଥାଇ । ପାଞ୍ଚଶ ଲୋକ ଯାଉଥିଲେ ମୃଗ ପଲରେ ସିଂହ ପଶି ମନ୍ଥିଲପରି ଲୁଟିକରି ନିଅଇ ।

ଏରୂପେ ଅନ୍ୟାୟ କରିବାରୁ ସେ ପଥ ନ ଚଳିଲା, ବଣିଜ ନ କରିବାରୁ ଲୋକମାନେ ବଡ଼ ଦୁଃଖ ପାଇଲେ, କିଛି ଜିନିଷହିଁ ନ ମିଳିଲା । ପ୍ରାଣୀମାନଙ୍କର କାର୍ଯ୍ୟହିଁ ଅଚଳ ହେଲା, ସେତ ମଧ୍ୟସ୍ଥାନ । ଯେଉଁ ଦିଗରୁ ଆଇଲେ ସେହି ବାଟେ ମିଳନ୍ତି । ଆନଦିଗେ ଅତଯାତ ହେବାକୁ ସଜ ନୁହଇ, ଏମନ୍ତେ ସେ ପଥରେ ଯାଇ ଆସି ନ ପାରିବାରୁ ଉତ୍ତମ ମହାଜନମାନେ ବିଚାରିଲେ ଏ

କ୍ଷେତ୍ରପାଳଠାରେ ଅମ୍ଭେମାନେ ପ୍ରୀତି କରିବା । ନୋହିଲେତ ନ ଚଳିବ । ଏମନ୍ତ ବିଚାରି ଦଶବଂଶ ମହାଜନ ତାଠାକୁ ଗଲେ । କହିଲେ ହେ କ୍ଷେତ୍ରପାଳ ! ଅମ୍ଭେ ତୁମ୍ଭଠାରେ ମିଳିଲୁଁ । ତୁମେ ଯେଉଁରୂପେ ବୋଲିବ ସେହିରୂପେ ଧନ ଦେବୁଁ । ବାଟରେ ଧନ କାଞ୍ଚନ ଲୁଟି କରିବ ନାହିଁ । ଏମନ୍ତ କହି ନାନା ଧନ ଅଳଙ୍କାରମାନ ଦେଇ କ୍ଷେତ୍ରପାଳଠାରେ ପ୍ରୀତି କରି ଗଲେ । ସେ ଯେଉଁରୂପେ କହଇ ସେହିରୂପେ ଧନ ଭରଣା କରି ଦିଅନ୍ତି । ସେହିଦିନୁ ସେ ବାଟରେ ଭୟ ନ ପାଇ ଜଣେ ଦୁଇଜଣ ନିଶ୍ଚିନ୍ତରେ ଆତଯାତ ହେଲେ । ମଧ୍ୟ କାରବାର ଚଳିଲା । କ୍ଷେତ୍ରପାଳଠାରେ ଦେଳକୁ ଦେଳ ଅଧିକ ପ୍ରୀତି କଲେ, ଯେବେ ଅପୂର୍ବ ପଦାର୍ଥଟିଏ ମିଳଇ ତେବେ କ୍ଷେତ୍ରପାଳକୁ ଆଗେ ଦେଇ ପଛେ ଖାଆନ୍ତି । ଯେଉଁ ଇଷ୍ଟବନ୍ଧୁ ସେ ସେହିରୂପେ ସମାନ କରିଥାନ୍ତି । ଏଥିକୁ ଏ ପ୍ରୀତିକୁ ଦୁଷ୍ଟପ୍ରୀତି କହି । ଦୁଷ୍ଟ ଲୋକମାନଙ୍କ ସଙ୍ଗେ ପ୍ରୀତି ନ କରିବ । ଯେବେ ପ୍ରୀତି ନ କରିବ ତେବେ ଗୃହସ୍ଥମାନଙ୍କର ବ୍ୟବହାର ନ ଚଳଇ । କାଳେ ଅକାର୍ଯ୍ୟ ହୁଅଇ । ଏସବୁ ଦୁଷ୍ଟ ଲୋକ ଥିବାଠାରେ କଦାପି ବାସ ନ କରିବ । ତା ପାଶରୁ ଅନ୍ତର ହୋଇଯିବ ଯେବେ ଦଇବ ଅଯୁକ୍ତିରେ ଅନ୍ତର ହୋଇ ନ ପାରିବ ତେବେ ଉପର ମନରେ ତାଠାରେ ପ୍ରୀତି କରିବ । ଅନ୍ତରରେ ତୁଚ୍ଛ କରିଦେବ ।

( ନୀଚପ୍ରୀତି )

ଏବେ ନୀଚ ପ୍ରୀତି ଯେଉଁରୂପେ ତାହା ଶୁଣ । ଚନ୍ଦ୍ରଜ୍ୟୋତି ନାମେ ଏକ ରାଜହଂସ ଏକଦିନରେ ମାନସରୋବରରୁ ଗଙ୍ଗାକୁ ଆସୁଥିଲା । ପଥରେ ଅସନ୍ତେ ଦେଖିଲା ସେଠାରେ ଦିବ୍ୟ ପୁଷ୍କରଣୀ ଅଛି । ସେ ପୁଷ୍କରଣୀ ଦେଖି ହଂସ ବିଚାରିଲା, ଏହିଠାରେ ମୃଣାଳ

ଖାଇବ । ଏମନ୍ତେ ସେ ଜଳରେ ପଶି ମୃଣାଳମାନ ଅହାର କଲ୍ଲ । ଦୃଣପାଦ ନାମେ ଏକ ବକ ସେ ପୁଷ୍କରଣୀ ତଟେ ବସି ମୀନମାନଙ୍କୁ ଅହାର କରୁଥିଲ । ବକ ଦେଖି ବିଗ୍ଭରିଲ, ଏହା ଅଙ୍ଗ ଏଡ଼େ ସ୍ଥୂଳ କାହିଁକି ହେଲ, ମୁଁ କାହିଁକି ଏଡ଼େ ଦୁର୍ବଳ ହେଲି । ବର୍ଣ୍ଣରେ ତ ମୁଁ ଏହାଠାରୁ ଉଜ୍ଜ୍ୱଳ । ଚକ୍ଷୁହିଁ ମୋର ସୁନ୍ଦର, ପକ୍ଷମାନ ଅତି ଉତ୍ତମ, କେବଳ ଚଞ୍ଚୁ, ବେକ, ପାଦ ଟିକିଏ ସରୁ ସରୁ ବୋଲି ଅବା ଦ୍ରୁଲଲ୍ଲ ବେଲକୁ ମାନ୍ଯ ନ ଥିବ । ମୋର ଯେବେ ଏହାପରି ଦେହ ମୋଟ ହେବ ତେବେ ଏହାଠାରୁ ଅତି ସୁନ୍ଦର ଦଶିବ । ବକମାନଙ୍କ ମଧ୍ୟରେ ରାଜାପରି ଦଶିବ । ଏବେ ଏହାର ସଙ୍ଗେ ପ୍ରୀତିକରି ଏ ଯାହା ଖାଉଅଛି ମୁଁ ତାହା ଭୁଞ୍ଜିବ ।

ଏମନ୍ତ ବିଗ୍ଭରି ଯାଇଁ ଡାକିଲ, "ଅହେ ମରାଳବର, ତୁମ୍ଭେ ଏ ଦଗକୁ ଅସି ଜଳକେଳି କର । ତେଣେ ବ୍ୟାଧମାନେ ପାଶ ବସାଇଥାନ୍ତି, ପକ୍ଷିମାନଙ୍କୁ ଧରି ପ୍ରାଣ ନିଅନ୍ତି, ଏବେ ସତ୍ୱର ଅସ ।" ଏହା ଶୁଣି ଚନ୍ଦ୍ରଜ୍ୟୋତି ହଂସ କାତର ହେଲ ଏବଂ ବିଗ୍ଭରିଲ "ଏ ବକ ବଡ଼ ଦୟାଳୁ, ପ୍ରାଣୀ ଉପକାରୀ । ବଡ଼ ସଙ୍କଟରୁ ରକ୍ଷା କଲ । ଏବେ ମୁଁ ଏହାଙ୍କଠାରେ ପ୍ରୀତି କରିବ ।" ଏମନ୍ତ ବିଗ୍ଭରି ଦୃଣପାଦ ବକ ନିକଟକୁ ଅସି କହିଲ, ହେ ମହାତ୍ମା ବକରାଜ । ତୁମ୍ଭେ ବଡ଼ ଦୟାଳୁ, ମୋତେ ପ୍ରାଣଦାନ ଦେଲ, ଏ ସକାଶରୁ ତୁମ୍ଭ ମୋ ପ୍ରୀତିପଣ ହେଲ । ଏ କଥାରେ ଅନ୍ତର ନାହିଁ । ବକ କହିଲ ଏତ ମୋର ଭାଗ୍ୟ, ମାତ୍ର ମୁଁ ଯାହା ପଗ୍ଭରିବ ନିର୍ମଳକରି କହିବ । ହଂସ ବୋଇଲ ପଗ୍ଭରିବା ହେଉ । ବକ କହିଲ, ଅପଣ କି ଦ୍ରବ୍ୟ ଖାଅନ୍ତି, ମୋତେ ତାହା କହନ୍ତୁ, ମୁଁ ତାହା ଖାଇବ । ହଂସ କହିଲ ଅମ୍ଭେ ଯାହା ଖାଉଁ ଏଠାରେ ସେ ପଦାର୍ଥମାନ କାହୁଁ ମିଳିବ । ସୁରଗଙ୍ଗାରେ ସେ ଥାଇ । ଯେବେ ତା ଖାଇବାକୁ

ଇଚ୍ଛାକଲେ ମୁଁ ତାହା ଆଣିଦେବ । ଏମନ୍ତେ ବକ ସଙ୍ଗେ ପ୍ରୀତି କରି ହଂସ ମେଲାଣି ହୋଇ ସେଠାରୁ ଚଳିଲା । ଗଙ୍ଗାରେ ପ୍ରବେଶ ହୋଇ ତହିଁ କିଛିଦିନ ବିହାର କରି ଭକ୍ଷ୍ୟ ପଦାର୍ଥମାନ ଥଣ୍ଟରେ ଧରି ଦୃଢ଼ପାଦଙ୍କ ନିକଟରେ ପ୍ରବେଶ ହେଲା । ଦେଖିଲା ସେ ପୁଷ୍କରଣୀଠାରେ ବକ ମୀନ ଜଗିଛି । ଚନ୍ଦ୍ରଜ୍ୟୋତି ହଂସ ତା ପାଖେ ବସି ମାନ୍ୟ କଲା । କହିଲା ହେ ବକରାଜ ! ତୁମ୍ଭ ପାଇଁ ଭକ୍ଷ୍ୟ ପଦାର୍ଥମାନ ଆଣିଛି । ଏହା ପାନ କର, ଚଞ୍ଚୁରୁ ଆହାର କାଢ଼ି ତଳେ ଥୋଇଲା । କହିଲା ଏ ମୃଣାଳରସ, ପୁଷ୍କର ରସ, କୁମୁଦ କନ୍ଦ, ତମାଳର ମକରନ୍ଦ, କନକପଙ୍କ, ମୋତି ରଜକ । ଏ ନାମ ମାନ ହଂସଠାରୁ ଶୁଣି ବକ ମହା ଆନନ୍ଦ ହେଲା । ଦୃଢ଼ପାଦ ନାମେ ବକ ଆନନ୍ଦରେ ସେ ରସମାନ ଖାଇଲା । ବିଚାରିଲା ଏଥର ମୁଁ ସ୍ଥୂଳ ହେବି, ଏରୂପେ ପାଞ୍ଚ ସାତଥର ବକକୁ ହଂସ ଏ ଆହାର ଆଣି ଦେଲା । ବକ ଔଷଧ ଖାଇଲା ପରି ବିମୁଖରେ ଖାଉଥାଇ । ଦିନକୁ ଦିନ ଦେହକୁ ଚାହିଁ ବିଚାରୁ ଥାଇ ମୁଁ ଅଜ ତ ମୋଟ ହେଲି ନାହିଁ । ବକ କି ହଂସପ୍ରାୟ ହୁଅନ୍ତା ? ଯହୁଁ ଦେହ ନ ବଢ଼ିଲା ହଂସ ପ୍ରୀତିରେ ମୋର କି କାର୍ଯ୍ୟ ଅଛି । ପଙ୍କ, ପଥର ଧୂଳି ଗୁଡ଼ାଏ ମାଛ ଖାଇଲି । ହଂସ ଅଇଁଠା ମାଛ ଖାଇଲି, ଖୁଣ୍ଟା ରହିଲି, ବକମାନେ ଶୁଣିଲେ ନିନ୍ଦା କରିବେ । ଅଜାତି କରି ରଖିବେ । ଏବେ ହଂସକୁ ମୁଁ ଅଇଁଠା ଖୁଆଇଲେ ସିନା ହେବ ।

ଏ ସମୟରେ ଚନ୍ଦ୍ରଜ୍ୟୋତି ହଂସ ଅଇଲା । ଥଣ୍ଟରେ, ସେ ଆହାର ଥୋଇ ବକକୁ କୋଳକରି ବସିଲା । ବକ କହିଲା, "ଅହେ ମଙ୍ଗଳବର ! ତୁମ୍ଭ ଦ୍ରବ୍ୟ ତ ମୁଁ ବହୁତ ଖାଇଲିଣି । ମୁଁ କିଛି ଖୁଆଇ ପାରିଲି ନାହିଁ । ପ୍ରୀତି ଦୁଇଆଡ଼ୁ ହେଲେ ସିନା ସୁନ୍ଦର । ମୁଁ ଯାହା ଦେବି ତୁମ୍ଭେ ତାହା ପାନ କରିବ ।" ହଂସ ବୋଇଲା କାହିଁକି ନ କରିବି, ଅଚ୍ଛା,

ଦଅ । ବକ କହିଲା ଦଣ୍ଡେ ମାତ୍ର ବସ । ମୁଁ ଯାଇ ଆଣିବି । ଏହା କହି ବକ ଯାଇଁ ଗାଡ଼ଆଟିକେ ପଶିଲା । ଗେଣ୍ଡା, ଶାମୁକା, ଭେକ, ଜୋକ, ମୀନ ଏ ରୂପେ ମାରି ତହୁଁ ଖଣ୍ଡେ ଖଣ୍ଡେ ଖାଇ ଅଜ ଖଣ୍ଡମାନ ଥଣ୍ଟରେ ଯାକିଧରି ଆସି ହଂସ ପାଶେ ମିଳିଲା । ହଂସ ଅଗେ ଥୋଇ କହିଲା, "ଏହା ତେବେ ଭୋଜନ କର" ହଂସ ସେ ଦୁର୍ଗନ୍ଧରେ କହିଲା, ଏହା ପାନ କରି ନ ପାରିବି ପରି ।" ବକ କହିଲା ଏତ ଉତ୍ତମ ଦ୍ରବ୍ୟ, ମୋଠାରେ ଯେବେ ସ୍ନେହ ଥିବ ତେବେ ଭୋଜନ କରିବ । ହଂସ ତ ମହାସୁଜନ ବକ କଥାରେ ବିଶ୍ୱାସ କରି ତହୁଁ ଖଣ୍ଡେ ଗିଳି ଦଅନ୍ତେ ପେଟରେ ପଶି ଦେହ ମନ୍ଥି ହେଲା, ହଂସ ବଡ଼ ବିକଳ ହୋଇ ତାହା ବାନ୍ତି କରି ପକାଇଲା । ମୀନ ଦୁର୍ଗନ୍ଧରେ ଦେହ ଘାଣ୍ଟି ହେଉଛି । ବକକୁ କହିଲା, ମୋ ପ୍ରାଣ ଯିବ, ଏ ବିକଳ ସହି ନୋହିବ । ବକ କହିଲା ମୁଁ ତୁମ୍ଭର ଅଇଁଠା ଖାଇଲି, ବକକୁଳକୁ ଅସୁନ୍ଦର ହେଲା । ତୁମ୍ଭେ ମୋ ଅଇଁଠା ନ ଖାଇ କିରୂପେ ଯାଅନ୍ତ ? ଏବେ ତୁମ୍ଭ ପ୍ରୀତିରେ ମୋର ଫଳ ନାହିଁ । ବକମାନେ ଝୁମ୍ପି ପକାଇବେଟି, ଏଠାରୁ ବେଗେ ପଳା । ଏହା ଶୁଣି ହଂସ କାତର ହୋଇ ପ୍ରାଣ ଭୟରେ ସେଠାରୁ ପଳାଇଗଲା । ଏ ପ୍ରୀତିକି ନୀଚପ୍ରୀତି କହି । ଏ ପ୍ରୀତି କଲେ ଉତ୍ତମ ଲୋକ ନୀଚ ହୋଇ ଯାଇ । ଏ ସକାଶୁଁ ନୀଚ ଲୋକ ସଙ୍ଗରେ ପ୍ରୀତି ନ କରିବ ।



# ଦକ୍ଷିଣମେରୁ ପଥେ

ପ୍ରାୟ ଚାଳିଶ ପଚାଶ ବର୍ଷ ତଳର କଥା । ସେତେବେଳକୁ ଦକ୍ଷିଣମେରୁ ଆବିଷ୍କୃତ ହୋଇ ନ ଥିଲା । ବହୁବାର ବହୁ ମନସ୍ୱୀ ଦକ୍ଷିଣମେରୁ ଆବିଷ୍କାର କରିବାକୁ ଉଦ୍ୟତ ହୋଇ ଅକାଳରେ ମୃତ୍ୟୁମୁଖରେ ପତିତ ହୋଇଥିଲେ । ଏହା ବ୍ୟତୀତ ଅନେକ ନାବିକ ମଧ୍ୟ ମେରୁ ଆବିଷ୍କାର କରିବାକୁ ପ୍ରବଳ ପ୍ରୟାସ କରିଥିଲେ, କିନ୍ତୁ ଶେଷରେ ସେମାନେ ବିଫଳ ମନୋରଥ ହୋଇଥିଲେ ବା ମାର୍ଗରେ ପ୍ରାଣ ହରାଇଥିଲେ । ୧୯୧୧ ମସିହା ଡିସେମ୍ବର ମାସ ୧୬ ତାରିଖରେ ନରୱେବାସୀ କ୍ୟାପଟେନ ଆମୁଣ୍ଡସେନ ଦକ୍ଷିଣମେରୁରେ ପହଞ୍ଚିଥିଲେ । ମାତ୍ର ତାର ଦଶବର୍ଷ ପୂର୍ବରୁ କ୍ୟାପଟେନ ସ୍କଟ ନାମକ ଜଣେ ଇଂରେଜ ନାବିକ ଦକ୍ଷିଣମେରୁରେ ପହଞ୍ଚିବା ପାଇଁ ଉଦ୍ୟମ କରିଥିଲେ । ସେହି ଅନାବିଷ୍କୃତ ଅଞ୍ଚଳକୁ ଆବିଷ୍କାର କରିବା ପାଇଁ ତାଙ୍କ ପ୍ରାଣରେ ପ୍ରବଳ ପିପାସା ଜାଗି ଉଠିଥିଲା । ଅବଶେଷରେ ସେ ଶେଷ ଥର ପାଇଁ ଯାତ୍ରା କରି ଆଉ ଫେରିଲେ ନାହିଁ । ତାଙ୍କ ସହିତ ଦଳର ସମସ୍ତେ ମୃତ୍ୟୁମୁଖରେ ପତିତ ହୋଇଥିଲେ । ଯେପରି ଅବସ୍ଥାରେ ପଡ଼ି ସେମାନେ ପ୍ରାଣ ହରାଇଲେ ତାହା ଅତ୍ୟନ୍ତ

ଶୋଚନୀୟ ଓ ମର୍ମଭେଦୀ । ଏଠାରେ କ୍ୟାପ୍‌ଟେନ ସ୍କଟ ଓ ତାଙ୍କର ସହଚରମାନଙ୍କର ବିପୁଳ ଶୌର୍ଯ୍ୟବାହ ଓ ହୃଦୟ ବିଦାରକ କରୁଣ କାହାଣୀ ବର୍ଣ୍ଣନା କରାଯିବ । ୧୮୬୮ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରେ ସ୍କଟଙ୍କର ଜନ୍ମ । ତାଙ୍କର ପୂର୍ବ ପୁରୁଷମାନେ ଜାହାଜରେ କାମ କରି ଉଚ୍ଚ ପଦବୀରେ ଭୂଷିତ ହୋଇଥିଲେ । ସ୍କଟ ମଧ୍ୟ ବାଲ୍ୟକାଳରେ ଜାହାଜରେ କାମ କରିଥିଲେ ।

ଏହି ସମୟରେ ପୃଥିବୀର ବିଭିନ୍ନ ଦେଶର ନାବିକମାନେ ଦକ୍ଷିଣ ମେରୁକୁ ଯାତ୍ରା କରିବା ପାଇଁ ଚେଷ୍ଟା ଚଳାଉଥାନ୍ତି । ଦକ୍ଷିଣମେରୁ ଆବିଷ୍କାର କରିବା ପାଇଁ ଇଂଲଣ୍ଡରେ ମଧ୍ୟ ଗୋଟିଏ ଦଳ ଗଠିତ ହୋଇଥିଲା । ସ୍କଟଙ୍କର ବୟସ ସେତେବେଳେ ୩୨ ବର୍ଷ । ଅଳ୍ପ ବୟସ୍କ ହେଲେ ମଧ୍ୟ ତାଙ୍କୁହିଁ ସେହି ଦଳର ନେତାରୂପେ ମନୋନୀତ କରାଯାଇଥିଲା । ୧୯୦୧ ମସିହା ଅଗଷ୍ଟ ମାସରେ ୪୦ ଜଣ ନାବିକଙ୍କ ସହ ଦକ୍ଷିଣମେରୁ ଆବିଷ୍କାର କରିବା ପାଇଁ ସ୍କଟ ଯାତ୍ରା ଆରମ୍ଭ କଲେ ।

ଦକ୍ଷିଣମେରୁ ଦୁର୍ଲଂଘ୍ୟ ବରଫ ପ୍ରାଚୀର ଦ୍ୱାରା ବେଷ୍ଟିତ । ସମୁଦ୍ର ଜଳ ଉପରେ ଏହି ବରଫ ଖଣ୍ଡମାନ ପର୍ବତ ଆକାରରେ ଭାସୁଥାଏ । ଏସବୁକୁ ଅତିକ୍ରମ କରି ସମୁଦ୍ର ମଧ୍ୟରେ ଜାହାଜ ଚଳାଇବା ବଡ଼ କଠିନ ବ୍ୟାପାର । ପର୍ବତ ସଦୃଶ ବିଶାଳକାୟ ବରଫ ଖଣ୍ଡରେ ଜାହାଜ ବାଜିଲେ ତାହା ଚୂର୍ଣ୍ଣ ହୋଇ ଜଳମଗ୍ନ ହୁଏ । କ୍ୟାପ୍‌ଟେନ ସ୍କଟ ତାଙ୍କ ଦଳ ସହିତ ଅତଳ ସମୁଦ୍ରରେ ଯାତ୍ରା କରି ସେହି ବରଫ ପ୍ରାଚୀର ନିକଟରେ ଉପସ୍ଥିତ ହେଲେ । ବରଫ ଅତିକ୍ରମ କରି ଯିବାର କୌଣସି ଉପାୟ ନ ଦେଖି ସେଠାରୁ ଫେରି ଆସି ଗୋଟିଏ ଦ୍ୱୀପରେ ଆଶ୍ରୟ ନେଲେ । ପ୍ରବଳ ଶୈତ୍ୟ ଯୋଗୁଁ ସେତେବେଳେ ସମୁଦ୍ରର ଜଳରାଶି ଘନୀଭୂତ ହୋଇ ବରଫରେ

ପରିଣତ ହୋଇଥାଏ । କେତେ ମାସ ପରେ ଶୀତର ମାତ୍ରା କମିବାରୁ ସ୍କଟ୍ 'ସ୍ଲେଜ' ନାମକ ଏକ ଚକ ବିହୀନ ଗାଡ଼ିରେ ଚଢ଼ି ପୁଣି ଦକ୍ଷିଣମେରୁ ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ଏହି ଗାଡ଼ିରେ ୧୯ଟି କୁକୁର ଯୋଗ୍ୟ ହୋଇଥିଲେ । ଯାତ୍ରା ଆରମ୍ଭରେ ବିପଦ ଉପସ୍ଥିତ ହେଲା । ପଥ ଏପରି ଦୁରୂହ ହୋଇଥିଲା ଯେ, ଘଣ୍ଟାକର ବାଟକୁ ପାଞ୍ଚ ଘଣ୍ଟା ଲାଗୁଥିଲା । ବିରାଟ ବରଫଖଣ୍ଡମାନଙ୍କ ମଧ୍ୟରେ ଯିବାବେଳେ ସ୍ଥାନେ ସ୍ଥାନେ ଗଭୀର ଗହ୍ୱରମାନ ପଡ଼ୁଥିଲା । ସେଥିରେ ପଦାର୍ପଣ କଲା ମାତ୍ରେ ଅତଳ ସମୁଦ୍ର ମଧ୍ୟରେ ସଦ୍ଯସତ୍ ନିମଜ୍ଜିତ ହୋଇଯିବା କିଛି ବିଚିତ୍ର ନୁହେ ।

ପଥ ମଧ୍ୟରେ ସେମାନେ ବହୁ ବାଧା ବିଘ୍ନର ସମ୍ମୁଖୀନ ହୋଇଥିଲେ । ସମୁଦ୍ର ମଧ୍ୟରେ ପ୍ରବଳ ବରଫ ଝଡ଼ ଆରମ୍ଭ ହୋଇଥିଲା । ସେହି ବରଫ ଝଡ଼ ଭିତରେ ସେମାନଙ୍କୁ ଘାଟୀ ଜାଗା ମାନଙ୍କରେ ତମ୍ବୁ ଟାଣି ରହିବାକୁ ପଡ଼ୁଥିଲା । ଖାଦ୍ୟ ପଦାର୍ଥ ସେଠାରେ ମିଳିବା ତ ଏକ ପ୍ରକାର ଅସମ୍ଭବ । ଚତୁର୍ଦ୍ଦିଗରେ କେବଳ ବରଫ ଖଣ୍ଡ ଛଡ଼ା ବୃକ୍ଷ ଲତା କିମ୍ବା ପଶୁ ପକ୍ଷୀ ଆଦୌ ଦେଖାଯାଉ ନ ଥିଲେ । ଏହି ପରିସ୍ଥିତିରେ ସେମାନେ ନେଇଥିବା ଖାଦ୍ୟ ଶସ୍ୟ ସବୁ ସରି ଆସିଲା । ସ୍ଲେଜଗାଡ଼ି ଟାଣୁଥିବା କୁକୁର ଗୁଡ଼ିକ ରୋଗାକ୍ରାନ୍ତ ହୋଇ ଆଉ ଗାଡ଼ି ଟାଣି ପାରିଲେ ନାହିଁ । ତେଣୁ ବେଳେ ବେଳେ ସ୍କଟ୍ ଓ ତାଙ୍କ ସହଚରମାନଙ୍କୁ ଗାଡ଼ି ଟାଣିବାକୁ ପଡ଼ୁଥିଲା । ଅବଶେଷରେ ସେମାନେ ଆଉ ଅଧିକ ଅଗ୍ରସର ହେବା ଅସମ୍ଭବ ମଣି ପ୍ରତ୍ୟାବର୍ତ୍ତନ କଲେ ଓ ଗୋଟିଏ ଦ୍ୱୀପରେ ଆଶ୍ରୟ ନେଲେ ।

ସେହି ଦ୍ୱୀପରେ କେତେକ ମାସ ରହିବା ପରେ ପୁଣି ଥରେ ଆରମ୍ଭ କଲେ । ଏଥର ସେମାନେ ସାଙ୍ଗରେ କୁକୁର ନେଲେ ନାହିଁ । ଅନେକ ଦୂର ଅଗ୍ରସର ହେଲା ପରେ ଖାଦ୍ୟାଭାବରୁ ସେମାନଙ୍କୁ

ଫେରିବାକୁ ପଡ଼ିଲା । ଫେରିବା ବେଳେ ବାଟରେ ପୁଣି ବିପଦ ଉପସ୍ଥିତ ହେଲା; ସେମାନେ ଅଳ୍ପକେ ରକ୍ଷା ପାଇଗଲେ ।

ବାରମ୍ବାର ବିପଦର ସମ୍ମୁଖୀନ ହେବାରୁ ସେମାନଙ୍କର ଅଳ୍ପ ଧୈର୍ଯ୍ୟ ରହିଲା ନାହିଁ । ସ୍କଟ୍ ୧୯୦୪ ଖ୍ରୀଷ୍ଟାବ୍ଦରେ ଜାହାଜ ଧରି ସଦଳବଳେ ଇଂଲଣ୍ଡରେ ଉପସ୍ଥିତ ହୁଅନ୍ତେ ଇଂଲଣ୍ଡର ଲୋକେ ତାଙ୍କୁ ବିଶେଷ ସମ୍ବର୍ଦ୍ଧନା କଲେ । କିଛିକାଳ ସେଠାରେ ନିଜର ବନ୍ଧୁମାନଙ୍କ ସହିତ ସେ ସୁଖରେ କାଳଯାପନ କଲେ ।

ସ୍କଟ ଫେରି ଆସିବା ପରେ ସ୍ୟାକ୍‌ଲ୍‌ଟନ୍ ନାମକ ଜଣେ ଇଂରେଜ ଯୁବକ ୧୯୦୮ ଖ୍ରୀଷ୍ଟାବ୍ଦରେ ଦକ୍ଷିଣମେରୁ ଆବିଷ୍କାର ଉଦ୍ଦେଶ୍ୟରେ ଅଭିଯାନ ଚଳାଇଥିଲେ । କିନ୍ତୁ ସେ ବ୍ୟର୍ଥ ମନୋରଥ ହୋଇ ଫେରି ଆସିଥିବା ସମ୍ବାଦ ପାଇ କ୍ୟାପ୍‌ଟେନ୍ ସ୍କଟ୍ ପୁଣି ଥରେ ଦକ୍ଷିଣମେରୁ ଅଭିମୁଖରେ ଯାତ୍ରା କରିବା ପାଇଁ ମନସ୍ଥ କଲେ । ଏହି ସମୟରେ 'ନରୱେ' ଦେଶର ବିଖ୍ୟାତ ନାବିକ ଆମୁଣ୍ଡସେନ୍ ମଧ୍ୟ ଦକ୍ଷିଣମେରୁ ଯାତ୍ରା କରିବା ପାଇଁ ଗୋପନରେ ଆୟୋଜନ କରୁଥିଲେ । ୧୯୧୦ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୧ ତାରିଖରେ କ୍ୟାପ୍‌ଟେନ ସ୍କଟ୍ ଗୋଟିଏ ବଡ଼ ଜାହାଜରେ ଦକ୍ଷିଣମେରୁ ଅଭିମୁଖରେ ଯାତ୍ରା କଲେ । ସେ ତାଙ୍କ ଜାହାଜରେ ପ୍ରାୟ ତିନିବର୍ଷ ପାଇଁ ଉପଯୋଗୀ ଖାଦ୍ୟ ସାମଗ୍ରୀ ନେଇଥିଲେ । ଅଗାଧ ସମୁଦ୍ରରେ ଜାହାଜରେ ଯାଇ ଯାଇ ପ୍ରଥମ ଥର ପରି ଏଥର ମଧ୍ୟ ସେ ବିରାଟ ବରଫ ପ୍ରାଚୀର ନିକଟରେ ଉପସ୍ଥିତ ହେଲେ । ସେଠାରେ ଶୀତର ଆଧିକ୍ୟ ହେତୁ ସମୁଦ୍ର ଜଳ ବରଫରେ ପରିଣତ ହୋଇ ଯାଇଥିଲା । ସେହି ସ୍ଥାନରୁ ଦକ୍ଷିଣମେରୁ ମାତ୍ର ୭୫୦ ମାଇଲ ଦୂର । ଏହି ସାଢ଼େ ସାତଶହ ମାଇଲ ଯିବା ଓ ଫେରି ଆସିବାର ଆୟୋଜନ କରୁ କରୁ ସେପ୍‌ଟେମ୍ବର ମାସ ହୋଇଗଲା । ଅକ୍‌ଟୋବର ମାସରେ ଜାହାଜ ପରିତ୍ୟାଗ କରି

ଖାଦ୍ୟ ସାମଗ୍ରୀ ଧରି ସ୍ଲେଜ ଗାଡ଼ିରେ ସହଯାତ୍ରୀମାନଙ୍କ ସହିତ ସ୍କଟ ଦକ୍ଷିଣମେରୁ ଅଭିମୁଖେ ଯାତ୍ରା କଲେ ।

ଏଣେ, କ୍ୟାପ୍ଟେନ୍ ଅମୁଣ୍ଡସେନ୍ ମଧ୍ୟ ନରୱେ ରାଜ୍ୟରୁ ଯାତ୍ରା କରିଥିଲେ । ସେ ଦକ୍ଷିଣ ଆମେରିକାରେ ପହଞ୍ଚି ଖାଦ୍ୟ ସାମଗ୍ରୀ ଆୟୋଜନ କରି ଦକ୍ଷିଣମେରୁ ଅଭିମୁଖେ ଅଗ୍ରସର ହେଲେ । ପଥରେ ତାଙ୍କର ଦଳ ବିଶେଷ କଷ୍ଟ ପାଇ ନ ଥିଲେ । ତାଙ୍କ ଭାଗ୍ୟ ସେତେବେଳେ ଅନୁକୂଳ ଥିଲା । ବିନା ବିପଦରେ ଅମୁଣ୍ଡସେନ୍ ବରଫ ପ୍ରାଚୀର ଅତିକ୍ରମ କରି ଦକ୍ଷିଣମେରୁର ମାଳଭୂମିରେ ଉପସ୍ଥିତ ହେଲେ । ସେତେବେଳେ ଅମୁଣ୍ଡସେନ୍‌ଙ୍କ ମନରେ ଭାରି ଉତ୍କଣ୍ଠା ଜାତ ହେଉଥାଏ, ଯଦି ତାଙ୍କର ପ୍ରତିଦ୍ୱନ୍ଦୀ କ୍ୟାପ୍ଟେନ ସ୍କଟ୍ ଦକ୍ଷିଣ ମେରୁରେ ପହଞ୍ଚି ଯାଇଥିବେ, ତାହାହେଲେ ଦକ୍ଷିଣମେରୁର ଆବିଷ୍କାରକ ବୋଲି ସେ ଆଉ ଖ୍ୟାତିଲାଭ କରି ପାରିବେ ନାହିଁ । ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେବ । ଏହିପରି ଉତ୍କଣ୍ଠିତ ଚିତ୍ତରେ ଅଗ୍ରସର ହେଉ ହେଉ କ୍ୟାପଟେନ୍ ଅମୁଣ୍ଡସେନ୍ ଦକ୍ଷିଣମେରୁରେ ପହଞ୍ଚିଲେ । ସେତେବେଳକୁ କ୍ୟାପ୍ଟେନ ସ୍କଟ ସେଠାରେ ପହଞ୍ଚି ନ ଥିଲେ । ଅମୁଣ୍ଡସେନ୍ ଦକ୍ଷିଣମେରୁରେ ପହଞ୍ଚି ସେଠାରେ ନରୱେ ଦେଶର ପତାକା ପ୍ରୋଥିତ କଲେ । ଦକ୍ଷିଣମେରୁର ଆବିଷ୍କାରକ ରୂପେ ତାଙ୍କର ଖ୍ୟାତି ବଢ଼ିଗଲା । ତାଙ୍କର ଶ୍ରମ ସଫଳ ହେଲା । ଦକ୍ଷିଣମେରୁରେ ପ୍ରାୟ ୨୪ ଘଣ୍ଟା ଅବସ୍ଥାନ କରି କ୍ୟାପ୍ଟେନ୍ ଅମୁଣ୍ଡସେନ୍ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ ।

କ୍ୟାପ୍ଟେନ୍ ଅମୁଣ୍ଡସେନ୍ ଦକ୍ଷିଣ ମେରୁରେ ପହଞ୍ଚିଥିବା କଥା ସେତେବେଳକୁ କ୍ୟାପ୍ଟେନ୍ ସ୍କଟ ଓ ତାଙ୍କ ଦଳ ଜାଣି ନ ଥିଲେ । ଭୟାବହ ବରଫ ପ୍ରାଚୀର ଅତିକ୍ରମ କରି ସେ ଦକ୍ଷିଣ ମେରୁର କ୍ରମଶଃ ନିକଟବର୍ତ୍ତୀ ହେଲେ । ଅବଶେଷରେ ତାଙ୍କର

ଅଜୀବନ ଇପ୍‌ସିତ ଦକ୍ଷିଣମେରୁରେ ପହଞ୍ଚି ଭାବିଲେ ଯେ, ସେଠାରେ ସେ ନିଜ ଦେଶର ପତାକା ଉଡ଼ାଇବେ । ମାତ୍ର ପହଞ୍ଚି ଦେଖିଲେ ଯେ, ସେଠାରେ ନରୱେ ଦେଶର ପତାକା ଉଡ଼ୁଅଛି । ସେ ଅସିବାର ପ୍ରାୟ ଏକମାସ ପୂର୍ବରୁ ବିଖ୍ୟାତ ନାବିକ ଆମୁଣ୍ଡସେନ୍ ଦକ୍ଷିଣମେରୁର ପ୍ରଥମ ଆବିଷ୍କାରକ ରୂପେ ଗୌରବ ଅର୍ଜନ କରି ଚାଲି ଯାଇଅଛନ୍ତି । ଯେଉଁ ଯଶ ଲାଭ କରିବାପାଇଁ କ୍ୟାପ୍‌ଟେନ୍ ସ୍କଟ୍ ଅସାଧ ସାଧନାରେ ପ୍ରବୃତ୍ତ ହୋଇ ଜୀବନକୁ ତୁଚ୍ଛ ମନେ କରିଥିଲେ ତାହା ଶେଷରେ ଫଳବତୀ ନ ହେବାରୁ ତାଙ୍କ ହୃଦୟରେ ଗଭୀର ଆଘାତ ଲାଗିଲା । ଦକ୍ଷିଣମେରୁର ଆବିଷ୍କାରକ ବୋଲି ଜଗତରେ ଆମୁଣ୍ଡସେନ୍‌ଙ୍କ ନାମ ବିଖ୍ୟାତ ହେଲା—ସ୍କଟଙ୍କର ନୁହେ । ବିଫଳ ମନୋରଥ ହୋଇ ଭଗ୍ନହୃଦୟରେ ସେ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ । ମାତ୍ର ଫେରିବାବେଳେ ବାଟରେ ଯେପରି ଭାବରେ ତାଙ୍କର ମୃତ୍ୟୁ ଘଟିଲା ତାହା ଅତୀବ କରୁଣ ।

ଯିବା ସମୟରେ ତାଙ୍କର ବିଶେଷ କିଛି ବିପଦ ଘଟି ନ ଥିଲା । କିନ୍ତୁ ଫେରିବାବେଳେ ପଦେ ପଦେ ବିପଦ ଉପସ୍ଥିତ ହେଲା । ତାଙ୍କୁ ଭୀଷଣ ତୁଷାର ଝଡ଼ ମଧ୍ୟରେ ପଥ ଅତିକ୍ରମ କରିବାକୁ ହେଲା । ପ୍ରବଳ ବେଗରେ ତୁଷାରପାତ ହେଉଥିବାରୁ ପଥ ଦେଖାଗଲା ନାହିଁ । ଏହିପରି ଭୟଙ୍କର ଝଡ଼ ମଧ୍ୟରେ ପ୍ରାୟ ଶ୍ୱାସରୁଦ୍ଧ ଅବସ୍ଥାରେ ଅଗ୍ରସର ହେଉଥିବାବେଳେ ତାଙ୍କର ସଙ୍ଗୀମାନଙ୍କ ସହ ସ୍କଟ୍ ପଥଭ୍ରଷ୍ଟ ହେଲେ । ଖାଦ୍ୟ ସାମଗ୍ରୀ ଗଚ୍ଛିତ ଥିବା ତମ୍ବୁନିକଟରେ ସେମାନେ ପହଞ୍ଚି ପାରିଲେ ନାହିଁ । ଅନାହାରରେ ଶରୀର ଅବସନ୍ନ ହୋଇ ଆସିଲା । ଶୀତର ପ୍ରାବଲ୍ୟ ଯୋଗୁଁ ଦେହ ବରଫ ତୁଲ୍ୟ ଶୀତଳ ହୋଇଗଲା । ଏପରି ଅସୁ ଅସୁ ବାଟରେ ଅନାହାରଜନିତ କ୍ଳାନ୍ତି ଓ ଅବସାଦ ଯୋଗୁଁ ସଙ୍ଗୀମାନଙ୍କ ଭିତରୁ ଜଣେ ମୃତ୍ୟୁ

ମୂର୍ଚ୍ଛାରେ ପଡ଼ିଲେ । ତୁଷାର ଝଡ଼ ମଧ୍ୟରେ ଅନ୍ୟ ଜଣେ ସାଥିଙ୍କର ମଧ୍ୟ ମୃତ୍ୟୁ ହେଲା ।

ସ୍କଟ୍ ଏପରି ଭାବରେ ଅନ୍ୟ ଦୁଇଜଣ ସଙ୍ଗୀଙ୍କୁ ନେଇ ଅଗ୍ରସର ହେଉଥିବା ବେଳେ ସେମାନଙ୍କ ଶରୀର ବରଫ କଣାଦ୍ୱାରା ଆବୃତ ହେଲା । ସେମାନେ ଆଉ ଅଗ୍ରସର ହୋଇ ପାରିଲେ ନାହିଁ । ସେମାନଙ୍କର ଆଉ ଚାଲିବାର ଶକ୍ତି ରହିଲା ନାହିଁ । ସ୍କଟ୍ ଓ ତାଙ୍କ ସଙ୍ଗୀଦ୍ୱୟଙ୍କର ସେହିଠାରେହିଁ ବରଫ ସମାଧି ହେଲା । କ୍ୟାପ୍‌ଟେନ୍ ସ୍କଟ୍‌ଙ୍କ ମୃତ୍ୟୁର ବର୍ଷକ ପରେ ଇଂଲଣ୍ଡର ନାବିକମାନେ ତାଙ୍କର ମୃତ ଦେହକୁ ଆବିଷ୍କାର କରିଥିଲେ । ସ୍କଟ୍‌ଙ୍କର ହାତଲେଖା "ଡାଏରି" ମଧ୍ୟ ମିଳିଥିଲା । ସେଥିରେ ସେ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବ ପର୍ଯ୍ୟନ୍ତ ତାଙ୍କର ଯାତ୍ରାର ସମସ୍ତ ବିବରଣୀ ଲେଖି ଥିଲେ । ତାଙ୍କ ଯାତ୍ରା ଓ ମେରୁମଣ୍ଡଳର ପରିସ୍ଥିତି ସମ୍ପର୍କରେ ସେ ତାଙ୍କ ଡାଏରିରେ ବହୁ ମୂଲ୍ୟବାନ ବିବରଣୀ ପ୍ରଦାନ କରି ଅଛନ୍ତି ।

ସ୍କଟ୍‌ଙ୍କ ପରି ବୀର ପୁରୁଷ ଜାତିର ଗୌରବ । ତାଙ୍କ ଜୀବନରେ ସେ ଯେପରି ସାହସ ଓ ଆତ୍ମୋତ୍ସର୍ଗର ଦୃଷ୍ଟାନ୍ତ ଦେଖାଇଛନ୍ତି ତାହା ଇତିହାସରେ ବିରଳ । ଜ୍ଞାନର ପରିସର ବୃଦ୍ଧି କରିବା ପାଇଁ ଓ ଅଜଣା ଦେଶର ଖବର ଜାଣିବା ପାଇଁ ମନୁଷ୍ୟ କିପରି ଅସାଧ୍ୟ ସାଧନ କରିପାରେ ସ୍କଟ୍‌ଙ୍କର ଏହି ବିଷାଦମୟ ଆବିଷ୍କାର-କାହାଣୀରୁ ସୁସ୍ପଷ୍ଟଭାବରେ ପ୍ରତୀୟମାନ ହୁଏ ।



## ବିଚିତ୍ର ଗୁରୁ

ଅନେକ ଦିନ ତଳର କଥା । ଆମର ଏହି ପବିତ୍ର ଭାରତ ଭୂମିରେ ବହୁ ଋଷି—ମହର୍ଷି, ମୁନି—ମନୀଷୀ, ସାଧୁ ଓ ସାଧକ ବାସ କରୁଥିଲେ । ସେମାନଙ୍କର କୀର୍ତ୍ତି କଳାପ ସଂସ୍କୃତ ସାହିତ୍ୟରେ ଲିପିତ ହୋଇ ରହିଛି । ସେମାନେ ନିଜ ନିଜର ବିଚିତ୍ର ସାଧନାରେ ପୃଥିବୀର ଅଶେଷ କଲ୍ୟାଣ ସାଧନ କରି ଇହଧାମରୁ ବିଦାୟ ନେଇ ଯାଇଛନ୍ତି । କିନ୍ତୁ ସେମାନଙ୍କର ସାଧନା ଏବେ ମଧ୍ୟ ଆମ୍ଭମାନଙ୍କ ହୃଦୟରେ ବିସ୍ମୟ ସୃଷ୍ଟି କରୁଛି । ଆମର ସାଧାରଣ ଦୃଷ୍ଟିରେ ଯାହା ମୂଲ୍ୟହୀନ, ତହିଁରୁ ପ୍ରାଚୀନ ଭାରତର ଜଣେ ଜଣେ ସାଧକ ମହା ମୂଲ୍ୟବାନ ତଥ୍ୟମାନ ଆବିଷ୍କାର କରିଛନ୍ତି ।

ସଂସ୍କୃତଭାଷାର ରାମାୟଣ, ମହାଭାରତ ଏବଂ ଭାଗବତ କଥା କିଏ ନଜାଣେ ? ରାମାୟଣରେ ରାମଚନ୍ଦ୍ରଙ୍କ ପିତୃଭକ୍ତି ଓ ଦଶରଥଙ୍କର ସତ୍ୟ ପାଳନ, ପୁଣି ଦୁଷ୍ଟ ରାବଣର ବିନାଶ ବୃତ୍ତ ଆଜି ମଧ୍ୟ ଭାରତରେ ଘରେ ଘରେ ପଠିତ ଓ ଆଲୋଚିତ ହେଉଅଛି ।

ମହାଭାରତରେ ଭୀଷ୍ମଙ୍କର ଭୀଷଣ ପ୍ରତିଜ୍ଞା, ଅର୍ଜୁନଙ୍କର ବୀରତ୍ୱ, ଯୁଧିଷ୍ଠିରଙ୍କ ଧର୍ମଭାବ ପୁଣି ଶ୍ରୀକୃଷ୍ଣଙ୍କ ବିଚିତ୍ର ଲୀଳା ଏବେ ମଧ୍ୟ ଆମ୍ଭମାନଙ୍କର ଅନ୍ତରରେ ଉତ୍ସାହ ଓ ଉଦ୍ଦୀପନା ଆଣିଦିଏ ।

ଭାଗବତରେ ମଧ୍ୟ ବହୁ ଶିକ୍ଷଣୀୟ ଚରିତ ସନ୍ନିବେଶିତ । ସେ ମଧ୍ୟରୁ ଗୋଟିଏ ହେଉଛି ଅବଧୂତଙ୍କର ଚବିଶ (୨୪) ଗୁରୁ କଥା । ଆମ୍ଭେମାନେ ଯାହାଙ୍କ ନିକଟରୁ ବିଦ୍ୟା ଶିକ୍ଷା କରୁ ତାହାଙ୍କୁ ହିଁ ଗୁରୁ ରୂପେ ଗ୍ରହଣ କରିଥାଉଁ । ଗୁରୁ ଆମର ଉପଦେଷ୍ଟା, ଆମର ଜୀବନ-ବିଧାୟକ ଓ ଆମର ଚରିତ୍ର-ଗଠକ । ଗୁରୁ ଆମର ନମସ୍ୟ। ତାଙ୍କର ପ୍ରସାଦରୁ ଆମର ଅଜ୍ଞାନ ଅନ୍ଧକାର ଦୂର ହୁଏ । ଭାଗବତରେ ଅବଧୂତ ଯଦି ୨୪ ଜଣ ଗୁରୁ ପାଇଥିଲେ ସେ କେଡ଼େ ସୌଭାଗ୍ୟବାନ୍ ଏବଂ ଜ୍ଞାନୀ ହୋଇ ପାରି ନ ଥିବେ ?

କିନ୍ତୁ ଅବଧୂତଙ୍କ ଚବିଶ ଜଣ ଗୁରୁ ଭିତରୁ କେହି ଜଣେ ଗୁରୁ କୌଣସି ଉଚିତଙ୍ଗ ଶାସ୍ତ୍ରରେ ସୁପଣ୍ଡିତ ନ ଥିଲେ । ଅଥଚ ଅବଧୂତ ନିଜର ଅସାଧାରଣ ଜ୍ଞାନ ବଳରେ ସେମାନଙ୍କ ଠାରୁ ନାନା ଆଦର୍ଶ ଓ ମହତ୍ ଗୁଣ ଶିକ୍ଷା କରି ପାରିଥିଲେ । ସେହି କାରଣରୁ ସେ ସେମାନଙ୍କୁ 'ଗୁରୁ' ରୂପେ ଅଭିହିତ କରିଅଛନ୍ତି ।

ଚବିଶ ଜଣ ଗୁରୁଙ୍କ ମଧ୍ୟରୁ ଏଠାରେ ୫ ଜଣ ଗୁରୁଙ୍କ କଥା ମାତ୍ର ଏଠାରେ କୁହା ଯାଉଛି । ସେମାନେ ହେଉଛନ୍ତି ପୃଥିବୀ, ପବନ, ସୂର୍ଯ୍ୟ, ମଧୁମକ୍ଷିକା ଓ କୁରରୀ ।

ଅବଧୂତ ପୃଥିବୀକୁ ଗୁରୁରୂପେ ଗ୍ରହଣ କରିଥିଲେ । ନିର୍ଜୀବ ଜଡ଼ ପୃଥିବୀ ଅବଧୂତଙ୍କୁ କି ନୂତନ ନୀତିଶିକ୍ଷା ଦେଇ ପାରିଥିଲା, ତାହା ସେ ନିଜେ କହିଅଛନ୍ତି । ପୃଥିବୀ ଉପରେ ଲୋକେ ପାଦ ପ୍ରହାର କରନ୍ତି, ତାର ବକ୍ଷ ବିଦାରଣ କରି କୂପ ଖନନ କରନ୍ତି ଓ କୃଷି କରନ୍ତି, କିନ୍ତୁ ଉଦାର ପୃଥିବୀ ତହିଁରେ ବିଚଳିତ ହୁଏ ନାହିଁ । ଯେ

ତାକୁ ଏଭଳି ଭୟଙ୍କର ଭାବରେ ପୀଡ଼ା ଦିଏ, ପୃଥିବୀ ନୀରବ ଭାବରେ ସବୁ ସହ୍ୟ କରି, ତାକୁ କ୍ଷମା ଦିଏ । ଠିକ୍ ସେହିପରି, ଜଣେ ମଣିଷ ଯଦି ଅନ୍ୟକୁ କୌଣସି କାରଣରୁ ପୀଡ଼ାଦିଏ, ତେବେ ତାହିଁରେ ସେ ବିବ୍ରତ ବା ଉତକ୍ଷିପ୍ତ ହେବା ଅନୁଚିତ । ବରଂ ତାକୁ ପ୍ରଶାନ୍ତ ଚିତ୍ତରେ କ୍ଷମା ଦେବା ବିଧେୟ । ତାହାହେଲେ, ସଂସାରରେ ଏତେ କଳକନ୍ଦଳ ଓ ପରସ୍ପରର କ୍ଷତିକାରକ ବାଦ-ବିବାଦ ବହୁପରିମାଣରେ କମି ଯାଆନ୍ତା । ଏହା ବ୍ୟତୀତ ପୃଥିବୀ ନିଜର ବକ୍ଷରେ ନାନା ବୃକ୍ଷଲତା ପରିପୂର୍ଣ୍ଣ ସମ୍ବଳ ପର୍ବତମାନ ଧାରଣ କରି ଅଛି । ପର୍ବତ ସ୍ଥିତ ବୃକ୍ଷଲତା ପର୍ବତର ଉପକାର କରନ୍ତି ନାହିଁ କିମ୍ବା ପୃଥିବୀ ନିଜେ ସେହି ଭୂଧରମାନଙ୍କ ଦ୍ୱାରା ଉପକୃତ ହୁଏ ନାହିଁ । ବରଂ ଆବଶ୍ୟକ ହେଲେ, ପର୍ବତର ବୃକ୍ଷଲତା ଏହି ମାନବ ସଂସାରର ହିତସାଧନରେ ନିୟୋଜିତ ହୁଅନ୍ତି । ମାନବର କଲ୍ୟାଣ ବିଧାନରେ ଆଶ୍ରିତ ବୃକ୍ଷଲତାଙ୍କୁ ନିୟୋଜିତ କରିବାରେ ପର୍ବତର ଲବମାତ୍ର କୁଣ୍ଠା ନ ଥାଏ । ଅବଧୂତଙ୍କ ମତରେ, ପୃଥିବୀ କେବଳ ଅମ୍ଭମାନଙ୍କର ହିତ ସାଧନ ନିମନ୍ତେ ନିଜର ସମସ୍ତ ଶକ୍ତି ବ୍ୟୟ କରୁଅଛି । ଠିକ୍ ସେହିପରି ଅମ୍ଭମାନଙ୍କ ମଧ୍ୟରୁ ଯାହାଠାରେ ଯେଉଁ ଶକ୍ତି ଅଛି, ଅନ୍ୟମାନଙ୍କର ଉପକାର ସାଧନରେ ସେହି ଶକ୍ତି ବିନିଯୁକ୍ତ ହେବା ଉଚିତ । ସମସ୍ତଙ୍କୁ କ୍ଷମାଦେବା ଓ ନିଃସ୍ୱାର୍ଥ ଭାବରେ ଅନ୍ୟର ଉପକାର ସାଧନ କରିବା, ଏହି ଦୁଇଟି ଗୁଣ ପୃଥିବୀ ଠାରୁ ଶିକ୍ଷା କରି ଅବଧୂତ ନିଜର ପ୍ରଥମ ଗୁରୁରୂପେ 'ପୃଥିବୀ'କୁ ହିଁ ଗ୍ରହଣ କରିଛନ୍ତି ।

ଅବଧୂତଙ୍କର ଆଉ ଗୋଟିଏ ଗୁରୁ ହେଉଛି 'ପବନ' । ଧରାପୃଷ୍ଠରେ ପବନର ଗତି ସ୍ୱଚ୍ଛନ୍ଦ ଓ ଅପ୍ରତିହତ । ସୁଗନ୍ଧ ପୁଷ୍ପ ଶୋଭିତ ମନୋହର ଉଦ୍ୟାନ ଓ ନିତାନ୍ତ ଅପରିଷ୍କାର ମଳ ମୂତ୍ର

ପୂର୍ଣ୍ଣ ସ୍ଥାନ ନେଇ ପବନ ଗତି କରେ । କେତେବେଳେ ସୁଗନ୍ଧରେ ସେ ଜନମନ ହରଣ କରେ, କେତେବେଳେ ବା ଦୁର୍ଗନ୍ଧ ବହନ କରି ଲୋକଙ୍କର ଘୃଣାଭାବ ଜାଗ୍ରତ କରାଏ । କିନ୍ତୁ ସୁଗନ୍ଧ ବା ଦୁର୍ଗନ୍ଧ, କୌଣସି ଗୋଟିଏ ଗୁଣ ବହୁ କାଳ ଧରି ପବନକୁ ପ୍ରଭାବିତ କରିପାରେ ନାହିଁ । କିଛି କ୍ଷଣ ପରେ, ପବନ ନିଜର ସ୍ୱାଭାବିକ ସ୍ୱଚ୍ଛତା ଓ ନିର୍ମଳତା ପ୍ରକାଶ କରେ । ଠିକ୍ ସେହିପରି ମାନବ, ସଂସାରରେ ବିଚରଣ କଲାବେଳେ ନାନା ପ୍ରକାର ପଦାର୍ଥର ସଂସର୍ଗରେ ଆସିଥାଏ । କେତେବେଳେ ଉଚ୍ଚ ଓ ଉଦାର, କେତେବେଳେ ବା ନୀଚ ଓ ହୀନ ବ୍ୟକ୍ତିମାନଙ୍କର ସଂସ୍ପର୍ଶରେ ଆସିଥାଏ । କିନ୍ତୁ ଯେଉଁଠାରୁ ସେ ଯାହା ଗ୍ରହଣ କରୁ ନା କାହିଁକି, ତହିଁରେ ସେ ନିଜର ନିଜତ୍ୱ ହରାଇବା ଉଚିତ ନୁହେଁ ।

'ସୂର୍ଯ୍ୟ' ହେଉଛନ୍ତି ଅବଧୂତଙ୍କର ଗୁରୁମାନଙ୍କ ମଧ୍ୟରେ ଅନ୍ୟତମ । ସୂର୍ଯ୍ୟଙ୍କଠାରୁ କି ନୀତିଶିକ୍ଷା କରି ସେ ତାଙ୍କୁ ଗୁରୁ ରୂପେ ଗ୍ରହଣ କଲେ ? ସୂର୍ଯ୍ୟ ଧରା ପୃଷ୍ଠରେ ପ୍ରାଣ ସଞ୍ଚାରର ପ୍ରଧାନ କାରଣ । ସୂର୍ଯ୍ୟ ନ ଥିଲେ ଧରାପୃଷ୍ଠର ଜଳରାଶି ଆକାଶକୁ ଉତ୍ତୋଳିତ ହୋଇ ମେଘମାଳା ସୃଷ୍ଟି କରି ପାରନ୍ତା ନାହିଁ । ତାହା ନ ହେଲେ ପୃଥିବୀରେ ବୃଷ୍ଟି ହୁଅନ୍ତା ନାହିଁ । ବୃଷ୍ଟି ନ ହେଲେ ପୃଥିବୀରେ ବୃକ୍ଷ ଲତା ଜନ୍ମିବା ଅସମ୍ଭବ ହୋଇ ପଡ଼ନ୍ତା ।

ସୁତରାଂ ସାରାପୃଥିବୀ ଏକ ମହା ମରୁଭୂମିରେ ପରିଣତ ହୁଅନ୍ତା । ସେହିପରି ଏକବିଗନ୍ତ-ବିସ୍ତୃତ ରୁକ୍ଷ ମରୁଭୂମିରେ ପ୍ରାଣ ଧାରଣ କରିବା ସମ୍ଭବପର ହୁଅନ୍ତା ନାହିଁ । କିନ୍ତୁ ସୂର୍ଯ୍ୟହିଁ ନିଜର କିରଣ ବଳରେ ଜଳ ଆକର୍ଷଣ କରି ନେଇ ବର୍ଷାରୂପରେ ପୁଣି ତାହା ଦିଅନ୍ତି । ସେ ଜଳ ଆକର୍ଷଣ କଲେ ମଧ୍ୟ ନିଜର ଉପଭୋଗ ଲାଗି ତାହା

ବ୍ୟବହାର କରନ୍ତୁ ନାହିଁ । ଠିକ ସେହିପରି ଯାହାର ଯେଉଁ ଶକ୍ତି ଅଛି ତାହା ବିଶ୍ୱକଲ୍ୟାଣ ସାଧନରେ ବ୍ୟୟିତ ହେବା ଉଚିତ ।

ଅଦୂର ମଧ୍ୟ ଆକାଶରେ ଆମ୍ଭେମାନେ ଯେଉଁ ଗୋଟିଏ ସୂର୍ଯ୍ୟ ଦେଖୁଁ ତାହାର ପ୍ରତିବିମ୍ବ ବିଭିନ୍ନ ଜଳାଶୟରେ ଓ ଜଳପାତ୍ରରେ ପଡ଼ିଥାଏ । କୂପ, ପୁଷ୍କରିଣୀ, ନଦୀ, ସରୋବର ଓ ସାଗର—ଦିନବେଳେ ସୂର୍ଯ୍ୟଙ୍କର ପ୍ରତିବିମ୍ବ ଏହି ସମସ୍ତ ଜଳାଧାରରେ ଦେଖିବାକୁ ମିଳେ। ମନେହୁଏ, ଯେପରିକି ଆକାଶରେ ବହୁ ସୂର୍ଯ୍ୟ ଅଛନ୍ତି ଏବଂ ପ୍ରତ୍ୟେକ ପ୍ରତିବିମ୍ବ ଲାଗି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସୂର୍ଯ୍ୟ ଦାୟୀ । କିନ୍ତୁ ପ୍ରକୃତ କଥା ତାହା ନୁହେଁ । ବିଭିନ୍ନ ଜଳାଧାରରେ ଯେତେ ପ୍ରତିବିମ୍ବ ଦେଖାଯାଏ ସେ ସମସ୍ତର ମୂଳରେ ସେହି ଏକମାତ୍ର ସୂର୍ଯ୍ୟ ବିରାଜମାନ, ଯେଉଁ ସୂର୍ଯ୍ୟ ଆମ୍ଭମାନଙ୍କର ଦିବସ ଓ ସୃଷ୍ଟିର କାରଣ ।

ଅବଧୂତ ସୂର୍ଯ୍ୟଙ୍କଠାରୁ ଏହି ଶିକ୍ଷା ଲଭିଲେ ଯେ ସଂସାରରେ ମାନବ ପଶୁପକ୍ଷୀ, କୀଟପତଙ୍ଗ ପ୍ରଭୃତି ଯେତେ ବିଭିନ୍ନ ପ୍ରକାରର ପ୍ରାଣୀ ଅଛନ୍ତି, ସେ ସମସ୍ତଙ୍କ ହୃଦୟରେ ଏକ ଆତ୍ମା ବିରାଜିତ । ଅଥଚ ଆମେ ଦୈନନ୍ଦିନ ଜୀବନରେ ପରସ୍ପର ପ୍ରତି ଘୃଣା ପ୍ରଦର୍ଶନ ଓ ଶତ୍ରୁତା ଆଚରଣ କରିଥାଉଁ । ସୂର୍ଯ୍ୟଙ୍କଠାରୁ ଏହି ଶିକ୍ଷା ମିଳୁଛି ଯେ, ଯଦି ସମସ୍ତଙ୍କ ଅନ୍ତରରେ ସେହି ଏକମାତ୍ର ଆତ୍ମା ବିରାଜିତ, ତେବେ ଶତ୍ରୁତା ପାଇଁ ଅବକାଶ ରହିଲା କେଉଁଠି ? ପୃଥିବୀ ପୃଷ୍ଠରେ ଯେ ଯେଉଁଠାରେ ଥାଉନା କାହିଁକି, ସମସ୍ତେ ଆମର ବନ୍ଧୁ, ଆମର ଆତ୍ମୀୟ ସ୍ୱଜନ ଓ ଅନ୍ତରଙ୍ଗ ମିତ୍ର । ବାସ୍ତବରେ ସୂର୍ଯ୍ୟ ଅବଧୂତଙ୍କର ଜ୍ଞାନଚକ୍ଷୁ ତ ଖୋଲି ଦେଇଛନ୍ତି । ଆମ୍ଭମାନଙ୍କୁ ମଧ୍ୟ ବିଶ୍ୱପ୍ରେମ ଓ ବିଶ୍ୱଭ୍ରାତୃତ୍ୱର ଶିକ୍ଷା ଦେଇ ବିଶ୍ୱଶାନ୍ତି ଓ ବିଶ୍ୱମୈତ୍ରୀ ପ୍ରତିଷ୍ଠାର ମାର୍ଗ ପରିଷ୍କାର କରି ଦେଇଅଛନ୍ତି ।

ଅବଧୂତ କେବଳ ପୃଥିବୀ, ସୂର୍ଯ୍ୟ ଓ ପବନ ପରି ବିରାଟ ତଥା ବ୍ୟାପକ ବସ୍ତୁମାନଙ୍କୁ ଗୁରୁ କରି ନାହାନ୍ତି—କ୍ଷୁଦ୍ରାତିକ୍ଷୁଦ୍ର ପ୍ରାଣୀଠାରୁ ମଧ୍ୟ ସେ ନିଜର ଜୀବନ ନିୟନ୍ତ୍ରଣ ଲାଗି ମହନୀୟ ନୀତିଶିକ୍ଷା କରିଛନ୍ତି । ମଧୁମକ୍ଷିକା ଅବଧୂତଙ୍କର ଅନ୍ୟ ଏକ ଗୁରୁ । ଫୁଲରୁ ଫୁଲକୁ ବିଚରଣ କରି ମଧୁମକ୍ଷିକା ପରମ ଯତ୍ନ ସହକାରେ ମଧୁ ସଞ୍ଚୟ କରେ । ଯଦି ସଞ୍ଚିତ ମଧୁ ମଧୁମକ୍ଷିକାର ଉପଭୋଗରେ ଲାଗିପାରିଥାନ୍ତା, ତେବେ ମଧୁଚକ୍ର ଗଠନ କରିବାର ଅବଶ୍ୟକତା ନ ଥାନ୍ତା । କିନ୍ତୁ ମଧୁମକ୍ଷିକାର ସମସ୍ତ ଶ୍ରମ ପଣ୍ଡ ଓ ବିଫଳ ହୁଏ, ଯେତେବେଳେ ଶବର ଅଗ୍ନିସଂଯୋଗ କରି ମଧୁକୋଷରୁ ସୁମିଷ୍ଟ ମଧୁ ବଳପୂର୍ବକ ନେଇଯାଏ । ଅବଧୂତ ଏସବୁ ଦେଖି ଚିନ୍ତା କଲେ ଯେ, ମଧୁମକ୍ଷିକାର ଏହି ବ୍ୟବହାର ତାଙ୍କୁ ଅନ୍ୟ ଏକ ମହୋପଦେଶ ଦେଉଛି । ଲୋକେ କଠୋର ପରିଶ୍ରମ କରି ଧନ ଉପାର୍ଜନ କରୁଛନ୍ତି । ଅଥଚ ସେହି ଧନକୁ ନିଜର ଭୋଗ ନିମନ୍ତେ କିମ୍ବା ସମାଜର ସାମୂହିକ ମଙ୍ଗଳ ନିମନ୍ତେ ବ୍ୟୟ କରୁନାହାନ୍ତି । କୃପଣ ପରି ଧନ ସଂଚୟ କରିବା ଏକ ମହା ପାପ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାର କାରଣ ହେଉଛି, ଟଙ୍କା ପଇସା ଅର୍ଜି ତାକୁ ବାଣିଜ୍ୟ ବ୍ୟବସାୟ ପ୍ରଭୃତିରେ ନ ଲଗାଇ ଯଦି କେହି ଭୂମି ଭିତରେ କେବଳ ପୋତି ରଖେ, ସେହି ଧନ ଥାଇ ମଧ୍ୟ ନ ଥିବା ସଙ୍ଗେ ସମାନ । ତେଣୁ ବିଶ୍ବବାସୀଙ୍କର ଜୀବନକୁ ସୁନିୟନ୍ତ୍ରିତ କରିବା ପାଇଁ ଅବଧୂତ ନିଜର ଏହି ଗୁରୁଙ୍କ କଥା ସ୍ପଷ୍ଟ ଉଲ୍ଲେଖ କରି ଯାଇଛନ୍ତି ।

କୁରରୀ ପକ୍ଷୀକୁ ମଧ୍ୟ ଅବଧୂତ ଗୁରୁରୂପେ ମାନି ନେଇଥିଲେ । କୁରରୀ ଅତ୍ୟନ୍ତ ମାଂସାଶୀ । ଯଦି କୌଣସି ଏକ କୁରରୀପକ୍ଷୀ ଖଣ୍ଡିଏ ମାଂସ ପାଇଥାଏ, ତାକୁ ଅନ୍ୟ କୁରରୀ ପକ୍ଷୀମାନେ ଘେରି ଯାଆନ୍ତି ।

କିନ୍ତୁ ମାଂସ ଖଣ୍ଡିକ ସେ କେବଳ ନିଜେ ଖାଇବା ଲୋଭରେ ଅନ୍ୟ-ମାନଙ୍କୁ ଦିଏ ନାହିଁ । ଶେଷରେ ସେମାନଙ୍କର ଆକ୍ରମଣରେ ସେ ମାଂସ ଖଣ୍ଡିକ ତ ଭୋଗ କରିପାରେ ନାହିଁ, ଅଧିକନ୍ତୁ ପ୍ରାଣ ହରାଇବାକୁ ବାଧ୍ୟ ହୁଏ । ଅବଧୂତଙ୍କ ମତରେ, ମାନବ ନିଜର ଉପଭୋଗ ପାଇଁ ବା ଦେହରକ୍ଷା ପାଇଁ ଖାଦ୍ୟ ପଦାର୍ଥ ଯେ ସଂଗ୍ରହ ନ କରିବ ତାହା ନୁହେଁ, କିନ୍ତୁ କୌଣସି ପଦାର୍ଥରେ ଅତ୍ୟଧିକ ଆସକ୍ତ ବା ଏକାନ୍ତ ଲୋଭାବିଷ୍ଟ ହେବା ଆଦୌ ଶ୍ରେୟସ୍କର ନୁହେଁ । ପ୍ରକୃତରେ ଏହି ନିର୍ଲୋଭ ଗୁଣ ଲ୍ଲେଠପକ୍ଷୀଟିଏ ହେଲେ ମଧ୍ୟ, କୁରରଟିଠାରୁ ଆମର ଶିକ୍ଷଣୀୟ ନୁହେଁ କି ?



# ଧୂଳିଆ ବାବା

ଦେଗାଁର ହନୁମାନଜୀ ପ୍ରତ୍ୟକ୍ଷ ଦେବତା—ସେ ତ କିଛି ଆଜି କାଲିକା, କଳିଯୁଗର ଦେବତା ନୁହନ୍ତି—ସତ୍ୟଯୁଗରୁ ବସିଛନ୍ତି । ମହନ୍ତ ମହାରାଜାଙ୍କ ନାମ ହନୁମାନ ଦାସ । ତାଙ୍କର ବି ସେହିପରି ମହିମା । ବଡ଼ ବଚନସିଦ୍ଧ ପୁରୁଷ ଥିଲେ । ଯାହାକୁ ଯାହା ଆଜ୍ଞା କରୁଥିଲେ, ତୁରନ୍ତ ଫଳି ଯାଉଥିଲା । ତାଙ୍କ ମହିମା କଥା ପୃଥିବୀ ସାରା ଜାରି । ନାଗପୁର ମରହଟ୍ଟା ଫୌଜଦାର ସବୁ କଥା ଶୁଣି ପାରି ତାଙ୍କୁ ଦର୍ଶନ କରିବାକୁ ଆଇଲା । ସକାଳ ଓଳିଆ ମହନ୍ତ ମହାରାଜ ଗୋଟାଏ କାନ୍ଥୁଡ଼ା ଉପରେ ବସି ଗଞ୍ଜେଇ ଟିପୁଥିଲେ—ଦୂରକୁ ଅନାଇ ଦେଲେ ଯେ, ଗୋଟାଏ ଖୁବ୍ ବଡ଼ ଦନ୍ତା ହାତୀ ଉପରେ ଅମାରି କସା, ତା ଉପରେ ପାଟଛତା ଉଡୁଛି, ଫୌଜଦାର ତା ଉପରେ ବସି ଆସୁଛି । ମହନ୍ତ ମହାରାଜ ଖାଲି ଏତିକି କହିଲେ, 'ହୁଁ—ଚେଲ ବାବା କାନ୍ଥୁଡ଼ା ଚେଲ ।' ଆଉ କଣ କାନ୍ଥୁଡ଼ା ରହିପାରେ, ଚାଲିଲା । ତେଣୁ ଆସୁଛି ହାତୀ, ଏଣୁ ଯାଉଛି କାନ୍ଥୁଡ଼ା, ଅଧବାଟରେ ଭେଟାଭେଟି । ଫୌଜଦାର ଯିମିତି ଅନାଇ ଦେଇଛି, ଆଉ କଣ ହାତୀରେ ବସି ପାରେ—ଖପ୍ କରି ହାତୀରୁ ଡେଇଁ ପଡ଼ି ଲମ୍ ଲମ୍

ଗୋଡ଼ ଭଲେ ପଡ଼ିଗଲା । ମହନ୍ତ ମହାରାଜ କଲ୍ୟାଣ କଲେ, 'ଜୀବେ ରହୋ—ଜୀବେ ରହୋ—ବଚ୍ଚା—ଭଠ—ଉଠ—।' ଫୌଜଦାର ଯିମିତ ଉଠିଲ୍ଟୁ—ସାଙ୍ଗେ ସାଙ୍ଗେ ଲମ୍ବା ପାଟିଅରେ ବାର ବାଟି ଜମି ଅକର ସନନ୍ଦ କରି ଦେଲ । ଏହି ମହନ୍ତ ଗାଦିରେ ବସିଥିଲେ—ବାର ଶ ବାର ମାସ ବାର ଦିନ । ସେ ତ ଥିଲେ ଇଚ୍ଛାମୟ ପୁରୁଷ, ଆଉ ପୃଥିବୀରେ ରହିବାକୁ ମନ ବଳାଲ ନାହିଁ—ଅଯୋଧ୍ୟାକୁ ଖବର ଗଲ । ହନୁମାନ ଗାଦିରୁ ଜଣେ ଚେଲ ଅସିଲେ, ଏହାଙ୍କ ହାତରେ ଗାଦି ଦେଇ ସ୍ୱର୍ଗକୁ ଚାଲିଗଲେ । ଏ ଚେଲାଙ୍କ ନାମ ମର୍କଟ ଦାସ ମହନ୍ତ ମହାରାଜ । ଗାଦିର ମହିମା—ଏ ମହନ୍ତ ବି ସେହିପରି ।

ଏହାଙ୍କ ସମୟରେ ପଡ଼ିଲା ଫିରଙ୍ଗୀ-ଅମଲ ଜାରି । କଟକ ସାହେବ କହିଲା—"କ୍ୟା—ହିନ୍ଦୁ ଫକୀରକା ଖଜଣା ନ ଦେଇ କେଡ଼େ ଏତେ ଗୁଡ଼ାଏ ଜମି ମାହାଲିଆ ଖାଏଗା ? ବୋଲାଓ ଉସ୍କୁ, ହାମ ଦେଖେଗା ।" ପରୁଆନା ପାଇ ମହନ୍ତ ଘୋଡାରେ ଚଢ଼ି ବାହାରିଲେ । ଅଗରେ ବାନା ବୈରଖ ଉଡ଼ୁଛି, ହରିବୋଲ ପଡ଼ୁଛି, କୀର୍ତ୍ତନ ଲଗିଛି, ଯାଇ ହାଜର ହୋଇଗଲେ ମହାନଦୀ କୂଳରେ । ଭାଦ୍ରଅ ମାସିଆ ଦିନ, ମହାନଦୀ ଏ କୂଳ ସେ କୂଳ ଖାଇଛି, ବର୍ଷା ତୋଫାନ ବୋଲେ ମୁହିଁ—ନାଉରି କହିଲା, ନାଆ ପିଟାଇବ ନାହିଁ । ପାରି ହେଉଛନ୍ତି କିମିତ ? ମହନ୍ତ ମହାରାଜ ଅଜ୍ଞା କଲେ, 'ଫରବା ନାହିଁ !' କାଖରେ ଯେ ବାଘ ଛାଲ ଥିଲା, ପାଣିରେ ପାରି ଦେଲେ—ଅପେ ବସି ହୋଇଗଲେ, ଅଧିକାରୀ, ଟହଲିଆ, ସୁଆର ଚଳାଦା ଭଳି ଲୋକଙ୍କୁ ପାଖରେ ବସାଇ ନେଲେ । ଜଣେ ଛତିଆ ମହନ୍ତଙ୍କ ମୁଣ୍ଡ ଉପରେ ପାଟ ଛତା ଟେକିଥାଏ; ଦୁଇଜଣ ବାହୁଆ ଛାଲ ବାହି ଯାଉଛନ୍ତି । ଏଣେ ମହାନଦୀ ଆରକୂଳରେ ସାହେବ ବାଜଟି ପକାଇ

ବସିଥିଲା । ଦୂରସ୍ଥାନରେ ଗୃହିଁ ଦେଲୁ, ପାଖ ଲୋକଙ୍କୁ ପଚାରିଲୁ, 'ଏ କିଏ ?' ଲୋକେ କହିଲେ, 'ହିନ୍ଦୁ ଫକୀର ବଡ଼ ହୋଇ ଅଛନ୍ତି' ! ସାହେବ ଆଉ କଣ ଚୌକିରେ ବସିବ—ନଈ କୂଳକୁ ଧାଇଁ ଆଇଲା, ମୁଣ୍ଡରୁ ଟୋପି ତଳେ ରଖି ତିନି ସଲାମ କଲା । କହିଲା—'ହାଲେ ଫକୀର, ତୁମାରା କମିନ ବାହାଲ' । ଏ ମହନ୍ତ ଦେଢ଼ ହଜାର ବର୍ଷ ଗାଦିରେ ବସିଥିଲେ । ତାଙ୍କ ଉତ୍ତାରେ ଗାଦିରେ ବସିଲେ ଜମ୍ବୁବାନ ମହନ୍ତ ମହାରାଜ ।

ମଠର ପଛପଟରେ ଯେଉଁ ଦିଗାଙ୍କୁଡ଼ିଆ ବୁଢ଼ା ସାହାଡ଼ା ଗଛ ଦେଖୁଛ, ଏଇଟା କଣ ଜାଣ ? ମହନ୍ତ ଦିନେ ସାହାଡ଼ା ଦାନ୍ତକାଠିରେ ଦାନ୍ତ ଘଷୁଥିଲେ—କାଠିଖଣ୍ଡ ଦାନ୍ତରେ ଚିରି ଜିଭ ଛେଲା ପକାଇ ଦୁଇଖଣ୍ଡ କାଠି ଯୋଡ଼ି ମାଟିରେ ପୋତି ଦେଲେ, ତା ଉପରେ ଯିମିତି ଟୋପାଏ ପାଣି ପକାଇଛନ୍ତି, ହିମିତି ଗଜେଇଗଲା । ଏଇଟା ସେଇ ଗଛ । ବର୍ତ୍ତମାନ ମହନ୍ତଙ୍କ ନାମ 'ବାନ୍ଦର ଦାସ ମହନ୍ତ ମହାରାଜ' । ଏପରି ପୁରୁଷ କାହିଁ ଦେଖା ନାହିଁ—ନ ଥିବ । ପାଞ୍ଚହାତ ମର୍ଦ୍ଦ—ଗାଲ ଓଠ ଗୁଡ଼ିରେ ଲାଗି ଯାଇଛି, ଦେଖ ଦିଶେ ନାହିଁ ।- ବାହୁ ଆଉ ଲୋକଙ୍କ ଜଙ୍ଘ ପରି ମୋଟା, ପେଟଟି ଗୋଟିଏ ଦଶ ନୌତିଆ ଘୁମା, ଅଜଣା ଲୋକେ ଦେଖି କହିବେ, ମହନ୍ତ ଲଙ୍ଗଳା । ନାହିଁ ନାହିଁ—ଗୁଣ୍ଠେ ଚୌଡ଼ା ଦେଢ଼ ହାତ ଲମ୍ବ ଖଣ୍ଡେ କନା କୌପୀନ ମାରି ଥାଆନ୍ତି । ଜଙ୍ଘକୁ ଜଙ୍ଘ ଲାଗି ଯାଇଛି—ପେଟଟି ଝୁଲିପଡ଼ିଛି, କୌପୀନ ଦିଶେ ନାହିଁ । ଏ ମହନ୍ତଙ୍କର ବି ମହିମା ଅପାର । ମଠରରେ ଏତେ ଖଟ ପଲଙ୍କ, କାହିଁରେ ଶୋଇବେ ନାହିଁ; ସବୁବେଳେ ଧୂଳିରେ ଗଡ଼ୁଥାନ୍ତି । ଦେହଯାକ ଧୂଳି ଧୂସର । ସ୍ନାନ କେବେ କରନ୍ତି ନାହିଁ, ପାଣି ଛୁଅନ୍ତି ନାହିଁ—ଏଥିପାଇଁ ଲୋକମାନେ ମହନ୍ତ ମହାରାଜାଙ୍କୁ 'ଧୂଳିଆ ବାବା' ବୋଲି ଡାକନ୍ତି । ମଠରରେ

ଏତେ ଧନ ଦୌଲତ, ଏତେ ପିଠା ଖଜା କିଛୁ ଛୁଇଁବେ ନାହିଁ । ଦଶ ସେର ନିଖୁଣ ଦୁଧ ଅଉଟି ଅଉଟି ପାଞ୍ଚ ସେର ରହିବ, ଅଳତା ଫଡ଼ାପରି ଉପରେ ସର ପଡ଼ିବ । ଦ୍ୱିପ୍ରହର ଧୂପରେ ଠାକୁରଙ୍କ କଣ୍ଠରେ ଭୋଗ ଲାଗେ—ମହନ୍ତ ମହାରାଜ ତେଣିକି ସେବା କରନ୍ତି । ଅଳ୍ପ ତୋଳାଏ ଅପୁ, ପାଏ ଗଞ୍ଜେଇ ଖଞ୍ଜା । ଦିନରାତି ଗଞ୍ଜେଇ ଚିଲମ ହାତରୁ ଛୁଟେଣ ନ ଥାଏ । ଆଖି ଯୋଡ଼ିକ ସାନ ସାନ ସିନ୍ଦୂର ବିନ୍ଦୁପରି ଲାଲ । ସବୁବେଳେ ମିଞ୍ଜି ମିଞ୍ଜି କରି ରୁହନ୍ତି । ତାଙ୍କ ଗଞ୍ଜେଇ ଚିଲମଟା ହାତେ ଲମ୍ବ । ଦଶ ପନ୍ଦର ଜଣ ଭକତ-ଚେଲା ସବୁବେଳେ ବେଢ଼ି ବସିଥାନ୍ତି, ଗଞ୍ଜେଇଟିପା କାମ ପାଞ୍ଚ ଛ ଜଣଙ୍କ ହାତରେ ଲାଗିଥାଏ—ମନ୍ଦିରରୁ ପ୍ରସାଦ ସେବା କରି ସବୁବେଳେ ଏମାନେ ପାଖରେ ହାଜର ।

ଆଗ ଆଗ ମହନ୍ତ ମହାରାଜାମାନଙ୍କ ମହିମା କଥା ଦେଶ ଲୋକଙ୍କୁ ଜଣା । ପୁଣି ସେ ସବୁକଥା ଭୂର୍ଜପତ୍ରରେ ଦେବନାଗରି ଅକ୍ଷରରେ ରକ୍ତ ଚନ୍ଦନରେ ଲେଖା ହୋଇ ଦେଉଳ ସିଂହାସନ ତଳେ ଅଛି । ଏ ଧୂଳିଆ ବାବା ସେ ସବୁ ପଢ଼ି ଅସି ବିଶ୍ୱାସୀ ଭକ୍ତମାନଙ୍କ ପାଖରେ ଗୋପନରେ କହନ୍ତି । କେହି କେହି ଅବିଶ୍ୱାସୀ ଭକ୍ତ ଲୋକଙ୍କ ପାଖରେ ପ୍ରକାଶ କରି ପକାଏ ।

ଧୂଳିଆ ବାବା ସବୁଦିନେ ଚେଲାମାନଙ୍କ ଆଗରେ କହନ୍ତି— ଏହି ପୁଷ୍କରେ ଯେ ଜଗନ୍ନାଥ ଦେଉଳ ଦେଖୁଛ, ତାଆର ହୋଇ ବାଦ ପ୍ରତିଷ୍ଠାକୁ ଅଯୋଧ୍ୟାରୁ ହଜାରେ ଆଠ ମୂରତି ସାଧୁ ମହନ୍ତ ଭୋଜୀ ଖାଇବାକୁ ଆସିଥିଲେ—ଏ ବି ସେମାନଙ୍କର ମଧ୍ୟରେ ଆସିଥିଲେ । ଚେଲାମାନଙ୍କ ଭକ୍ତି ଏଡ଼ି ନ ପାରି ରହି ଯାଇଛନ୍ତି—ଅଜ ଏ ମିରୁଆ ଦେଶଟା ଭଲ ଲାଗୁ ନାହିଁ, ଅଯୋଧ୍ୟା ହନୁମାନ ଗାଦିକୁ ଫେରି ଯିବେ । ପ୍ରସାଦ ସେବାକାରୀ ଚେଲାମାନେ ଗୋଡ଼ତଳେ ପଡ଼ି ଗଡ଼ନ୍ତି ।

ସେମାନଙ୍କ ଉପରେ କୃପା କରି ଧୂଳିଆ ବାବା ରହି ଯାଇଛନ୍ତି । ଏପରି ଘଟନା ଶହକୁ ଶହେ ଥର ହୋଇଗଲାଣି ।

ମହନ୍ତଙ୍କର ଧନ ଦୌଲତ ଅମାପ । ଗାଈ ମଇଁଷି ପଲକୁ ପଲ, ଧାନ ଟଙ୍କାର ସୀମା ନାହିଁ । ଅସୁ ଢେର । ଅସୁ ମଧ୍ୟରୁ ଗୋଟିଏ ବିଶେଷ ଅସୁ ଏହି—ଦେଶ ମଧ୍ୟରେ ମାଲି ମକଦ୍ଦମା ଉପସ୍ଥିତ ହେଲେ ମୁଦେଇ ମୁଦାଲା ଦୁଇ ପକ୍ଷ ପ୍ରଭୁଙ୍କ ପାଖରେ ମନାସି ଯାନ୍ତି । ମାମଲା ଜିତି ହେଲେ କିଏ କେତେ ଟଙ୍କା ଦେବେ, ପାଞ୍ଜିଅ ଲେଖି ରଖେ । ଯାହାର ମାମଲା ଜିତି ହୁଏ, ଜଣେ ସାଧୁଙ୍କୁ ପଠାଇ ତାଠାରୁ ଟଙ୍କା ଅସୁଲ କରାଯାଏ ।

ରାମ ସାଉ ଶାମ ସାଉ ଦୁଇ ଭାଇ । ଭାଇ ଭାଗ ବଣ୍ଟା ଅରି ମାନି କଟକ ଅଦାଲତରେ ମକଦ୍ଦମା ଦାଏର ହେଲା । ରାମ ସାଉ ପ୍ରଭୁଙ୍କଠାରେ ମନାସି ଗଲା—ମାମଲା ଜିତି ହେଲେ କେତେ ଟଙ୍କା ଦେବ, ପାଞ୍ଜିଅ ପାଖରେ ଲେଖି ଦେଇଗଲା । ଶାମ ସାଉ ଆସେ ନାହିଁ । ବୁଝି—ବୁଝି, ଶାମା କିଆଁ ଆଇଲା ନାହିଁ । ଜଣେ ଚେଲା ବୁଝି ଆସି ଜଣାଇଲା, "ପ୍ରଭୁ ! କଣ କହିବି—କହିବାକୁ ଡର ମାଡୁଛି—ଆଜ୍ଞା —ଶାମାର ଏଡ଼େ ବହପ—ପାଞ୍ଚ ଜଣଙ୍କ ଆଗରେ ସାଫ ଫଟେଇ କହିଲା—କଳିକାଳରେ ମହନ୍ତଙ୍କ କରାମତ କାହିଁ ଯେ ମୁଁ ମନାସିବାକୁ ଯିବି ?" ମହନ୍ତ ଢେଙ୍କେତେବେଳେ ଗଞ୍ଜେଇ ଭଡୁଥିଲେ, ରାଗରେ ଖୁବ ବଳରେ ଚିଲମଟା ଭିଡ଼ି ନେଲେ—ଦପ କରି ଜଳି ଉଠିଲା । ମହନ୍ତ ଅଳ୍ପ ଅଳ୍ପ ଭକ୍ ଭକ୍ କରି ପାଟିରୁ ଧୂଆଁ ଛାଡୁ ଥାଆନ୍ତି—କଥାଟା ଚିପି ଚିପି କହିଲେ—"ଦେଖ ଚେଲାମାନେ, ଆମେ ହୁକୁମ କରିବୁଁ, ଏହି ଚିଲମ ନିଆଁ କଥା କହିବ ।" ଚେଲାମାନଙ୍କର ତ ଆନନ୍ଦର ସୀମା ନାହିଁ । ସେମାନଙ୍କର ଦୃଢ଼ ବିଶ୍ୱାସ, ମହନ୍ତଙ୍କ ଆଜ୍ଞା ମେଣ୍ଟିଣ ହେବାର ନୁହେଁ । ସେହି ଦିନ ମଧ୍ୟରେ ଦେଶଯାକ ହାଟ ହୋଇଗଲା,

ଧୂଳିଆ ବାବାଙ୍କ ପ୍ରଭୁଙ୍କର ସ୍ୱପ୍ନ ହୋଇଛି, ସେ ସିଦ୍ଧ ପୁରୁଷ ହୋଇ ଗଲେଣି, ତାଙ୍କ ଗଞ୍ଜେଇ ଚିଲମ କଥା କହିବ ।" ଏଥାକେ ଚେଲା ପ୍ରକାଶ କଲେ—ନାହିଁ ନାହିଁ—ଚିଲମ ନୁହେଁ, ଚିଲମ ନାଁଅଁ କଥା କହୁଛନ୍ତି । ଦଶ ଜଣଙ୍କ ଅଜ୍ଞା ହେଲା—ସେ ନାଁକ ଶୁଣି ଅସିଲା । ଅଜ ଯାଏ କାହିଁ ? ତହିଁ ଅର ଦିନ ସକାଳୁ ସଞ୍ଜ ଯାଏ ଶହକୁ ଶହ ଲୋକ ଧାଇଁଛନ୍ତି । କାହାକୁ ବେମାରୀ ଛାଡ଼ୁ ନାହିଁ—କାହାର ବଳଦ ହଜିଛି ମିଳୁ ନାହିଁ—କାହାର ମାମଲା ଦାଏର ଅଛି, ଜିତି ହେଉ । ଭେର ଭେର ତରଲା ପାପୁଜା ପଠାଇଛନ୍ତି, ସେମାନଙ୍କର ପୁଅ ହେଉ ନାହିଁ—ଚିଲମ ପ୍ରଭୁ ବର ଦେଉନ୍ତୁ । ଲୋକେ ପାଦପୁଜା ଟଙ୍କା ଅଧୁଲି ସୁଦ୍ଧ ମହନ୍ତଙ୍କ ପାଦତଳେ ଦେଇ ଅଧା ପଡ଼ୁଛନ୍ତି ।

ମହନ୍ତ ମହାରାଜ ଅଜ୍ଞା କଲେ, "ଉଠ ଉଠ ବାବାମାନେ । ଅମେ କିଛି କହିବୁ ନାହିଁ—ଏହି ଯେ ଅମ ଗଞ୍ଜେଇ ଚିଲମରେ ଅଗ୍ନି ଦେଖୁଛ, ସେଥିରେ ଧୂନି ଥାପନା ହେବ, ସେହି ଧୂନିରେ ଅଗ୍ନି ଦେବତା ବିଜେ କରିବେ, ସମସ୍ତଙ୍କ ଗୁହାରି ଶୁଣି ବର ଦେବେ । ଅସନ୍ତା ଅଗିରା ପୁନେଇ ଦିନ ଅଗ୍ନି ଦେବତା ସ୍ୱର୍ଗରୁ ବିଜେ ହୋଇ ପୃଥିବୀରେ ଭ୍ରମଣ କରିବେ । ଅମ୍ଭଙ୍କୁ ସ୍ୱପ୍ନରେ ଅଜ୍ଞା କରିଛନ୍ତି, ଅମେ ଧୂନି ଥାପି ତାଙ୍କୁ ବିଜେ କରାଇ ରଖିବୁଁ । ଯାହାର ଯାହା ଗୁହାରି ଥିବ, ପୁଜା ଦେଇ ଜଣାଇଲେ ତତ୍‌କ୍ଷଣାତ୍ ବର ମିଳିଯିବ ।" ପୁଜାର ବିଧାନ ସମସ୍ତଙ୍କୁ ଶୁଣାଇ ଦେଲେ—ଧୂନିରେ ଶଏ ଅଠ ଅହୁତ ଦିଆଯିବ—ସେଥି ସକାଶେ ଖଣ୍ଡିଏ ନବ ବସ୍ତ୍ର, ପାଞ୍ଚ ପା ଘିଅ, ପଞ୍ଚ ବର୍ଣ୍ଣି ଭୋଗ, ପଞ୍ଚ ବର୍ଣ୍ଣି ପୁଷ୍ପ । ଗାଦି ପୁଜା ଦକ୍ଷିଣା ଯାହାର ଯାହା ଶକ୍ୟ, କିନ୍ତୁ ପାଞ୍ଚ ସୁକାରୁ ଊଣା ନୁହେଁ ।

ଅଗିରା ପୁର୍ଣ୍ଣିମା ଅଧରାତିଠାରୁ ଧୂନି ପୁଜା ଅରମ୍ଭ ହେଲା । ମହନ୍ତ ମହାରାଜ ଅହୁତ ଦେବାରୁ ଅଗ୍ନି ଦେବତା ବିଜେ ହୋଇଗଲେ ।

ଧୂ—ଧୂ—ହୋଇ ଜଳୁଛନ୍ତି । ଯାହାର ଯାହା ପ୍ରାର୍ଥନା, ହାତ ଯୋଡ଼ି ଜଣାଇଲେ ଧୂନି ଭିତରୁ ଅଗ୍ନି ଦେବତା ଗମ୍ଭୀର ସ୍ୱରରେ, 'ହୁଁ—ନା—ହେବ' ଏହିପରି ଆଜ୍ଞା କରୁଛନ୍ତି । ପ୍ରତ୍ୟକ୍ଷରେ ଅବିଶ୍ୱାସ କିଏ ? ଲୋକମାନେ ଶୁଣି ତାଟକା—ଭକ୍ତିରେ ଭୂଇଁରେ ପଡ଼ି ଗଡ଼ି ଯାଉଛନ୍ତି । ହରି ଧ୍ୱନିରେ ମଠ ଉଚ୍ଛୁଳି ପଡ଼ୁଛି ।

ଶାମ ସାଇଁ ସବୁ କଥା ଶୁଣିଲା, ଘର ମଧ୍ୟରେ ତାକୁ ପାରି ମୂର୍ଚ୍ଛା ବାଡ଼େଇ ହେଉଛି । ଲୋକମାନେ ଧୂନି ପୂଜା କରି ବରଘେନି ଯାଉଛନ୍ତି । ସମୀଭାଇ ବି ପୂଜା ଦେଇ ବର ପାଇବ, ମୋହର ସର୍ବନାଶ ହେବ ! ଇଜମାଲି ଧନ ଅଣା ନୁହେଁ, ଲକ୍ଷକରୁ ବଳି ପଡ଼ିବ—ସବୁ ସମୀଭାଇ ଘେନି ଯିବ । ମହନ୍ତ ମହାରାଜ ଖପା ହୋଇ ଆଜ୍ଞା କରିଛନ୍ତି—'ଅଚ୍ଛା, ସେ ତେଲି ଟୋକାକୁ ଦେଖିବୁଁ ।' ଏ କଥା ଶୁଣିଲାବେଳୁଁ ଶାମର ଫାଙ୍କାଣି ଉଡ଼ିଲାଣି । କଣ କରିବ, ଭାଳୁଁ ଭାଳୁଁ ଗୋଟାଏ ବୁଦ୍ଧି ଦିଶିଗଲା । ମହନ୍ତ ମହାରାଜଙ୍କ ଗଞ୍ଜେଇ ପ୍ରସାଦସେବକମାନଙ୍କୁ ଯାଇ ଧରିଲା । କାହାକୁ ଦଶ, କାହାକୁ ପାଞ୍ଚ ଦେଇ ସମସ୍ତଙ୍କ ଗୋଡ଼ତଳେ ପଡ଼ିଲା—ସମସ୍ତେ ଅଭୟ ଦେଇ ମହନ୍ତଙ୍କ ଗୋଡ଼ତଳେ ପଡ଼ିବାକୁ ଉପଦେଶ ଦେଲେ ।

ବେଳ ଛ ଘଡ଼ି—ସେବକମାନେ ବେଢ଼ି ବସିଛନ୍ତି । ମହନ୍ତ ଧୂନିଟାରେ ବସି ଗଞ୍ଜେଇ ଭିଡ଼ୁଛନ୍ତି ଜାଗାଟା ଧୂଆଁମୟ । ଶାମ, ସ୍ତୁତ ଦ ନ୍ତି ଦାଉଁ ପଡ଼ୁଛି । ଭରି ଭରି ଯାଇଁ ମୁଠାଏ ଟଙ୍କା ପାଦପୂଜା ପାଇଁ ଝଣକରି ମହନ୍ତଙ୍କ ପାଦତଳକୁ ଫୋପାଡ଼ି ଦେଇ ଲମ୍ବ ଲମ୍ବ ଗୋଡ଼ତଳେ ପଡ଼ିଗଲା । "ପ୍ରଭୁ ! ମୁଁ ପିଲା—ମୁଁ ମହାପାପୀ, ମୋ ଅପରାଧ କ୍ଷମା କରନ୍ତୁ ।" ମହନ୍ତ ଆଖିବୁଜି ବସି ଗଞ୍ଜେଇ ଭିଡ଼ୁଛନ୍ତି, କିଛି ଆଜ୍ଞା ହେଲା ନାହିଁ । ସମସ୍ତ ସେବକ ଏକାବେଳକେ ମହନ୍ତ

ମହାରାଜାଙ୍କ ଗୋଡ଼ତଳେ ପଡ଼ି ପ୍ରାର୍ଥନା କଲେ—"ହେ ମହାପ୍ରଭୁ ! ଅମ୍ଭେମାନେ ମହା ପାପିଷ୍ଠ, ଅପରାଧୀ—ପ୍ରଭୁ କ୍ଷମା ନ କଲେ ଆଉ କିଏ ଜଗତରେ ଅଛି ?" ଦୟାମୟ ପ୍ରଭୁ ଏକାବେଳକେ ଅଙ୍ଗୀ କଲେ—'ଯାଓ ବେଟା, ପୂଜା ଲେଆଓ ।' ଶାମ ସାଉର ଆନନ୍ଦର ସୀମା ନାହିଁ—ପୂଜା ଆୟୋଜନରେ ଧାଇଁଛି । ଯେଡ଼େ ମହାଜନ, ପୂଜା ଆୟୋଜନ ସେହିପରି । ଘିଅ ପାଞ୍ଚ ଜାଗାରେ ପାଞ୍ଚ ସେର, ଆଉ ଆଉ ସରଞ୍ଜାମ ତା ମାପିକେ । ସମସ୍ତେ ଖଣ୍ଡେ ଖଣ୍ଡେ ସୂତା ଶାଢ଼ୀ ଅଡ଼ୁତ ଦଅନ୍ତି—ଶାମ ସାଉ କୁମ୍ଭକର୍ଣ୍ଣୀ କନାର ସଜା କରି ମୁହଁକୁ ଖଣ୍ଡେ ବରମପୁରି ପାଟଶାଢ଼ୀ ଅଡ଼ୁତ ଦେବାଲାଗି ଆଣିଛି । ଶାମ ସାଉର ଭାରି ବଡ଼ ପୂଜା ହେବ । ଗାଁରେ ସେ ଦୂର ଭାଇ ବଡ଼ ଠାଣୁଆ ମହାଜନ । ଅଗ୍ନିଦେବ ଠାକୁ କ ବର ଦେବେ ଶୁଣିବାପାଇଁ ଆଖପାଖ ପାଞ୍ଚ ଖଣ୍ଡ ଗାଁଅରୁ ମଣିଷ ଧାଇଁଛନ୍ତି । ଊଣା ଅଧିକ ପାଞ୍ଚଶହ ଲୋକ ଜମା ହୋଇ ଗଲେଣି—ବେଢ଼ା ଭିତରେ ଜାଗା ନାହିଁ ।

ମନ୍ଦିର ବେଢ଼ା ପାଚିରିଲଗା ଧାଡ଼ିଏ ଘର ଅଛି, ଗୋଟାଏ ଘରେ ମେଳା ମଉଚ୍ଛବରେ ପିଠା ଖଜା ତିଆରି ହୁଏ—ତା ପାଖଟା ସବୁ ଘର । ସେହି ପିଠା ତିଆରି ଘରେ ଧୂନି ଥାପନା ହୋଇଛନ୍ତି । ରାତି ଅନ୍ଦାଜ ଛ ଘଡ଼ି ସମୟରେ ମହନ୍ତ ମହାରାଜ ମନ୍ଦିର ପାଖ ଗମ୍ଭୀରରୁ ବାହାରିଲେ । ଆଜି ପ୍ରଭୁଙ୍କ ମନରେ ଭାରି ଆନନ୍ଦ—ଅନେକ ଟଙ୍କା ରୋଜଗାର ମାମଲା । ତୋଳାଏ ଅପୁ ଉପରେ ଫଳ ବେଳେ ଅଧୁରି ତୋଳାଏ ପକାଇଛନ୍ତି । ଗଞ୍ଜେଇଟା ବେଶୀ କରି ଭିଡ଼ିଛନ୍ତି । ଗୁଲିଟା ବେଳେ ଗୋଡ଼ ଟଳି ଯାଉଛି; ଗୁରୁ କଣ ଚେଲା ଧରାଧରି କରି ନେଉଛନ୍ତି । ମହନ୍ତ ବାବାଙ୍କ ଦର୍ଶନ କରି ସମସ୍ତ ଦେଖଣାହାରି ହରିବୋଲ ପକାଇ ଗୋଡ଼ତଳେ ପଡ଼ିଗଲେ । ପୂଜା ଆରମ୍ଭ

ହେଲା, ପାଞ୍ଚସେର ଘିଅ ଅହୁତ, ଖୁବ ମୋଟା ମୋଟା ଡେର ଗୁଡ଼ାଏ କାଠ ଧୂନିରେ ଲଦିଦେଲେ । ଅହୁତ ପାଇ ଗୃହହାତ ଜଳି ଶିଖା ଟେକି ନିଆଁ ଧୂ—ଧୂ ଜଳୁଛି । ଘର ଭିତରେ ମହନ୍ତ ଏକାକୀ । ପ୍ରଭୁଙ୍କର ସେବାପର ମହିମା—ନୋହିଲେ ନିଆଁ ତେଜରେ ଅନ୍ୟ କିଏ ସେ ଘରେ ପଶି ପାରିବ ? ଶାମ ସାଜ ବେକରେ ପଟକା ପକାଇ ହାତ ଯୋଡ଼ି ଦୁଆରବନ୍ଧ ବାହାରେ ଛିଡ଼ା ହୋଇ ଧୂନି ମହାପ୍ରଭୁଙ୍କ ଜନାଇ ପ୍ରାର୍ଥନା କରୁଛି । ମହନ୍ତ ଅର୍ଦ୍ଧ ବୁଜି ଖୁବ୍ ପାଟିକରି ପ୍ରାର୍ଥନା କଲେ, "ଧୂନିଜି ! ଶାମା ବେଟାକୁ ବର ଦିଅ—ବର ଦିଅ—ବରଦିଅ, ତା ମାମଲା ଫତେ ହେଉ ।" ଧୂନି କିଛି ଜବାବ ଦେଲେ ନାହିଁ । ମହନ୍ତ ଅପଣାର କରାମତି ଲୋକଙ୍କୁ ଦେଖାଇବା ପାଇଁ ଛିଡ଼ା ହୋଇ-ଗଲେ, ହାତରେ ଯେଉଁ ଦଣ୍ଡ ସେତିଆ ଲୁହା ଚିମୁଟା ଥିଲା, ଖୁବ୍ ଜୋରରେ ପାହାରେ ବାଡ଼େଇଲେ, ଭୂଇଁରୁ ଭାରି ଗୋଟାଏ ଶବ୍ଦ ହେଲା । ଶାମ ସାଜ ଚମକି ପଡ଼ି ଜନାଇଲା—ଘର ଭିତରେ ଖୁବ ଏ ଗଭୀର ଗୋଟାଏ ଗାତ । ଗାତ ଅଧାଅଧି ପୂରି ନିଆଁ ଜଳୁଛି, ତା ମଧ୍ୟରେ ଦୁଇଜଣ ଲୋକ ଭାରି ଗୋଟାଏ ଧରାପରା ଲଗିଛନ୍ତି । ଶାମ ପ୍ରଥମରେ କିଛି ବୁଝିପାରିଲା ନାହିଁ । ମୁହୂର୍ତ୍ତିକ ବାଦ ଭକ୍ତିବଳରେ ବୁଝିଗଲା—ଧୂନି ଦେବତା ଦେହଧରି ବିରାଜମାନ ହୋଇଗଲେଣି, ମହନ୍ତଙ୍କ ସଙ୍ଗରେ କୋଳାକୋଳି କରୁଛନ୍ତି । ତାହାର ଭାଗ୍ୟ ଫିଟିଲା, ବର ମିଳିଯିବ । ମୁହୂର୍ତ୍ତିକ ମଧ୍ୟରେ ଏତେ କଥା ବୁଝି ନେଲା । ଖୁବ୍ ପାଟିକରି ହରିବୋଲ ପକାଇ କହିଲା, ଧୂନି ଦେବତା ରୂପଧରି ବିଜେ ହେଲେଣି । ଯେତେ ଲୋକ ଥିଲେ, ଆନନ୍ଦରେ ହରିବୋଲ ପକାଉଛନ୍ତି —ମନ୍ଦିରରୁ ଘଣ୍ଟା କାହାଳୀ ଝାଞ୍ଜ ବାଜୁଛି—ସମୁଦ୍ର ଗର୍ଜନ ପରି ଶବ୍ଦ ଉଠୁଛି । ଅଗ୍ନି ଦେବତାଙ୍କ ଦର୍ଶନ କରିବାକୁ ଲୋକେ ଧାଇଁଲେ । ଗୋଟିଏ ଖୋଲା ଦୁଆର, ଘର ଭିତରଟା ଧୂଆଁରେ ପୂରିଛି । ଦୁଆର

ପାଖରେ ଥରାପରା ହୋଇ କେତେ ଲୋକ ମଡ଼ାଦଲାରେ ଅଣ୍ଟୁଛନ୍ଦି ଘାଇଲା ହୋଇଗଲେଣି ।

ପହରେ ବିତି ଗଲାଣି, ଲୋକେ ନାଚି କୁଦି ହରିବୋଲ ଦେଇ ହାଲିଆ ହୋଇ ପଡ଼ିଲେଣି । ଏ କଣ ? ମଡ଼ାପୋଡ଼ାର ଉତ୍କଟ ଗନ୍ଧ, ଲୋକେ ନାକରେ ଲୁଗା ଯାକୁଛନ୍ତି । କେତେ ଜଣ ଜଣା ଶୁଣା ଲୋକ ଦୁଆର ପାଖକୁ ଯାଇ ଭଲ କରି ଅନାଇଲେ—ଅରେ ମହନ୍ତ ମହାରାଜ ପୋଡ଼ି ମଲେଣିରେ । ବାକେ ଲୋକ ବୁଝିଲେ, ଅଗ୍ନି ଦେବତା ବଳେ ହୋଇ ମହନ୍ତବାବାଙ୍କୁ ଖାଇ ଗଲେଣି—କାଲେ ଧାଇଁ ଆସି ଆଉ ସମସ୍ତଙ୍କୁ ଖାଇ ଯିବେ । ପଳା—ପଳା—ପଳା । ପଡ଼ି ଉଠି ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଛନ୍ତି । ଶେଷକୁ ମନ୍ଦିରର ପୂଜାହାରୀ ଟହଲିଆ ଗୃକଭମାନେ ବି ଛାଡ଼ି ପଳାଇଲେଣି । ଦଣ୍ଡକ ମଧ୍ୟରେ ଏଡ଼େ ମନ୍ଦିରଟା ନିଶୂନ । ଖାଲି ଧୂନି ଘରୁ ପଟ୍ ପଟ୍ ଶବ୍ଦ ଶୁଭୁଛି, ଦୁର୍ଗନ୍ଧ ବାହାରୁଛି ।

ଦେଗାଁ ପାଖକୁ ଗୋପାଳପୁର ସରକାରୀ ଥାନା ପୁରା ଅଢ଼େଇ କୋଶ ବାଟ । ସକାଳୁ ସକାଳୁ ସେଠାରେ ଖବର ପହଞ୍ଚି ଗଲା । ଦାରୋଗା ସାହେବ ପାଞ୍ଚ ଛ ଜଣ ବରକନ୍ଦାଜ, ଆଠ ଦଶ ଜଣ ଚୌକିଦାର ଧରି ଧାଇଁଲେ । ( ଢେରଦିନ ତଳ କଥା, ସେତେବେଳେ କନଷ୍ଟେବଲ ନ ଥିଲେ ) ଦାରୋଗା ପହଞ୍ଚି ଦେଖିଲେ, ମନ୍ଦିରତ ମନ୍ଦିର, ଗାଁ ଗୋଟାକରେ ଜଣେ ମଣିଷ ବି ନାହିଁ, ସମସ୍ତଙ୍କ ଘରେ ତାଟି କବାଟ ବନ୍ଦ । ଚଉକିଆମାନେ ବହୁତ ଡକାହକା କରିବାରେ ଭିତରୁ ମାଇକିନିଆମାନେ ଜବାବ ଦେଲେ, "ପୁରୁଷ କେହି ଘରେ ନାହିଁ । କେହି ଯାଇଛି ଗୋରୁ ଖୋଜି, କେହି ଯାଇଛି କୁଣିଆ ଘର, କେହି ଜାଡଅଣ ଭୋଜୀ ଖାଇ, ଢେର ଲୋକ ଯାଇଛନ୍ତି କଟକ ମାମଲାରେ ।" ବହୁତ

ଖୋଳ ଉତ୍ସବରେ ମନ୍ଦର ପୂଜାହାସ୍ୱ ଅଉ କେତେ ଜଣ ଗୃହକର ବାହାରିଲେ । ଦାରୋଗା ସରଜମିନ ତଦାରଖ କରି ବୁଝିଲେ ଯେ, ସର ଘର ଭିତରୁ ଧୂନି ମଝିଯାଏ ମନୁଷ୍ୟ ଗୋଟାଏ ଗଳି ଯିବାଭଳି ବାଟ ଖୋଳା ଯାଇଛି । ଧୂନି ତଳେ ଅଢ଼େଇ ଅଢ଼େଇ ହାତ ଲମ୍ବା ଚଉଡ଼ା, ଅଢ଼େଇ ହାତ ଗମ୍ଭୀର ଗୋଟାଏ ଗାତ ଖୋଳା ହୋଇଛି, ତା ଉପରେ ଗୃହଗୁଡ଼େ ମୋଟା ମାଟି ମାଟି ଅଛି । ସେହି ମାଟି ଉପରେ ଧୂନି ଜଳେ । ସେ ଘର ଭିତରୁ ଗଳି ବାଟରେ ମଣିଷ ଗଳି ଆସି ଧୂନି ତଳେ ବସିଥାଏ, ମହନ୍ତ କିଛି ପଚାରିଲେ ଲୋକଟା ଭିତରୁ ଜବାବ ଦିଏ । ଘଟଣା ରାତିରେ ଗୋଟାଏ ଗଞ୍ଜେଇଖିଆ ଚେଲା ଧୂନି ତଳେ ବସିଥିଲା, ତା ନାମ ହୃଷ୍ଣା ଦାସ । ସେ ଦିନ ମହନ୍ତଙ୍କର ଭାଗ୍ୟ ନିଶାରେ ଜ୍ଞାନ ଲୋପ ହୋଇଗଲା । ଲସଗ୍ରସ୍ତ ମଣିଷ, ଭାଗ୍ୟ ଚିମୁଟାଟାରେ ଖୁବ୍ ବଳରେ ପାହାରେ ମାରିବାରୁ ଉପର ମାଟି ଅଉ ନିଆଁ ସବୁ ଗାତରେ ପଡ଼ିଗଲା । ଦୁଇଟା ଲୋକ ଧଡ଼ପଡ଼ ହୋଇ ପୋଡ଼ି ମଲେ । ବାହାରେ ବଡ଼ ଗୋଲମାଲ ହେଉଥିବାରୁ ସେମାନଙ୍କ ଆକୁଳ ଚିତ୍କାର କେହି ଶୁଣି ପାରିଲେ ନାହିଁ ।

ଦାରୋଗା ସାହେବ ରିପୋର୍ଟ ଲେଖି ମାଉନା ସହିତରେ ଅଧପୋଡ଼ା ଲାସ ଯୋଡ଼ାକ ସଦରକୁ ପଠାଇଦେଲେ ।



# ବୁଢ଼ା ଶଙ୍ଖାର

ପ୍ରାୟ ଫଗୁଣ ମାସ ଶେଷ ସବକି, ଉଦୁଉଦିଆ ଖରାବେଳେ ବୁଢ଼ାଟିଏ ଗୋଟିଏ ଗାଁ ମଝିରେ ଯାଉଥିଲା । ଷାଠିଏ ବରଷର ବୁଢ଼ା, ଦାନ୍ତଗୁଡ଼ାକ ସବୁ ପଡ଼ିଗଲାଣି, ମୁଣ୍ଡବାଳ ଢେଣିକା ଥାଉ, ଗୁଡ଼ ବାଳଗୁଡ଼ାକ ପାଚି ଧୋବ ଫର ଫର ଦିଶୁଛି । ବୁଢ଼ା ମୁଣ୍ଡରେ ଗୋଟିଏ ଟୋକେଇ, ଧୂଳିରେ ଅଣ୍ଟା ପାଟେକ ବୁଡ଼ିଛି, ଅଷ୍ଟାଙ୍ଗ ଶରୀର ଝାଳରେ ବୁଡ଼ି ଗୋଡ଼ ହାଟେ ବହି ଯାଉଛି ।

ଗାଁ ମୁଣ୍ଡରେ ଗୋଟିଏ ଘର । ପକା ପିଣ୍ଡା, ସାଢ଼ ଶେଣିଆ ଛପର, ଯାଉଁଳି କବାଟ । ବୁଢ଼ା ସେହି ପିଣ୍ଡାରେ ବୋଝଟି ଥୋଇ ଦେଇ, ନଥ କରି ବସି ପଡ଼ିଲା । କିଛିକ୍ଷଣ ପରେ ସେ ଘରୁ ଗୋଟିଏ ଦାସୀ ବାହାରି ଆସିଲା । ଦାସୀ ବୁଢ଼ାକୁ ଚିହ୍ନେ । ପଚାରିଲା, "କହୋ ଶଙ୍ଖାର ପୁଅ, ଶଙ୍ଖା ଆଣିଛ କି ?" ବୁଢ଼ା ଉତ୍ତର କଲା, 'ହଁ' । ପୁଣି କହିଲା, "ଝିଅ, ଟୋପାଏ ପାଣି ଦିଅନ୍ତୁ, ବୁଢ଼ାମଣିଷ, ଶୋଷରେ ଛାତି ଶୁଖି ଗଲାଣି ।" ଦାସୀ ପାଣି ଆଣିବାକୁ ଚାଲିଗଲା ।

କିଛିକ୍ଷଣ ପରେ ଲୋଟାଏ ପାଣି ଧରି ଦାସୀ ଫେରି ଆସି ବୁଢ଼ା ପାଖରେ ଥୋଇଦେଲା । ବୁଢ଼ା ଉପରକୁ ଅଁ କରିଦେଇ ଟକ

ଡକ କରି ଅଧଲୋଟାଏ ପାଣି ଟେକି ଦେଲା । ପାଣି ପିଇସାରି ବୁଢ଼ା ଡଜରବସ ନିଶ୍ୱାସଟାଏ ମୁହଁ ବାଟେ ପକାଇ କହିଲା, "ହଇଅ ତୋର ବଡ଼ ଧରମ ହେଲା ।" ଦାସୀ କହିଲା, "ହଉ ହେଲା ତ ହୋଲି ପଛକେ, ଗୁଲି ବାବୁ, ସାଆନ୍ତାଣୀ ଡାକୁଛନ୍ତି, କମିଡକା ଶଙ୍ଖା ଅଛି ଦେଖିବେ ।" ବୁଢ଼ା ଟୋକେଇଟି ନେଇ ଉଠିଲା । ସଦର ଦାରଜା ପାରି ହେଲେ ଭିତରେ ପକା ବାହାର, ସାମନାରେ ଚଉ-ପାଢ଼ୀ, ବାଆଁ ପାଖକୁ ଭିତର ଅଡ଼ ଦୁଆର । ସେ ଦୁଆର ପାଖରେ ଓଢ଼ଣା ଦେଇ ବହୁଟିଏ ଛିଡ଼ା ହୋଇଥିଲା । ବୁଢ଼ାଯାଇ ଟୋକେଇଟି ଥୋଇ ଛିଡ଼ା ହେଲା । ବହୁଟି ଧୀରେ ଧୀରେ ଦାସୀକି କହିଲା, "କି ଶଙ୍ଖା ଅଛି ପଚାରି ମା ।" ଦାସୀଟି ଟିକାଏ ମୁଖରା; ସେ କହିଲା, "ଛି କର, ବୁଢ଼ା ମିଣିପିଟାକୁ ଏତେ ଲାଜ । ନିଜେ ଟୋକେଇରୁ ଆସି ଦେଖୁନାହିଁ ?" କଥାଟା ମନକୁ ଆସିଲା । ବହୁଟି ଓଢ଼ଣା ଅଧେ ଟେକି ଦେଇ ମୁରୁକି ମୁରୁକି ହସି ହସିକା ବାହାର ଆସି ଟୋକେଇ ପାଖରେ ଛିଡ଼ା ହେଲା । ବହୁଟିର ମୁହଁ ଦିଶିଗଲା । ମୁହଁଟି ଚକା କାଟି ଦେଲାପରି, ଚମ୍ପା ଫୁଲ ପରି ଗୋରା । ଗୁରି ଅଙ୍ଗୁଳି ଓସାରି, ନାଲି ଡହଁର ମୟୂରକଣ୍ଠିଆ କନ୍ତା ଖଣ୍ଡିକ ଗୋଇଠି ଯାଏ ଲମ୍ବିଛି । ତା ଭିତରେ ଦେଇ ବହୁଟିର କଞ୍ଚାସୁନା ପରି ଗୋରା, ଗୋଟିଏ ଗୋଡ଼ଲରେ ଗଢ଼ା ଦେହଟି ଫୁଟି ଦିଶୁଛି । ବୁଢ଼ାର ଆଖି ପୂରି ଉଠିଲା । ଏଡ଼େ ସୁନ୍ଦର, ଏଡ଼େ ନିକ ବହୁଟିଏ ସେ କେବେ ଦେଖି ନାହିଁ । ବୁଢ଼ା ଆଜ ଆଖି ଫେରାଇ ପାରିଲା ନାହିଁ । ଏକା ଧାନରେ ବହୁଟିକୁ ଗୁହିଁ ରହିଲା । ବୁଢ଼ାର ଇଚ୍ଛା କଣ କହିବ ବୋଲି, କିନ୍ତୁ ପାଟିରୁ କଥା ଫୁଟିଲା ନାହିଁ । କେତେବେଳେ ବୁଢ଼ା ମୁହଁ ଫିଟାଇ କହିଲା, "ମା, କି ଶଙ୍ଖା ନବୁ ନେ ।" 'ମା' ବୋଲି ଡାକ ଦେଲାକ୍ଷଣି ବୁଢ଼ାର ଛାତି କୁଣ୍ଢେ ହୋଇଗଲା । ବହୁଟି ନାଳ

ଘୁଣ୍ଡି ଦେଇ କହିଲା, "ଅସମାନତାରା ଶଙ୍ଖା ଅଛି ?" ଓଃ, ଏତେ ମିଠାକଥା । ଏପରି କଥା ତ କେହି କହେ ନାହିଁ । ବୁଢ଼ାର କାନରେ ସେ ସ୍ୱରଟା ଥରକୁ ଥର ବାଜିବାକୁ ଲାଗିଲା । ବୁଢ଼ା କହିଲା, "ନା ମା, ରଙ୍ଗଚୈଲିଆ, ବଉଳଫୁଲିଆ, ବାଘମାଳିଆ, ଚୁନଟିପି ଏହିସବୁ ଅଛି । ଏହିଥିରୁ ଯାହା ନବୁ ନେ ମା, ମୁଁ ଅସମାନ୍‌ତାରା ତଥିରେ ହେଲେ ଆଣି ଦେବି ।"

ବହୂଟି ଦେଖି ଦେଖି ମୁଠାଏ ଶଙ୍ଖା ପସନ୍ଦ କଲା । ତେବେ ସେ ମୁଠାକ ହାତକୁ ହେବ କି ନାହିଁ କିଏ କହିବ । ଏହି ସମୟରେ "ବୁଢ଼ା କହିଲା, ଦେ ମା, ହାତ ଦେ, ମୁଁ ଶଙ୍ଖା କଛି ଦିଏ ।" ବହୂଟି ହଠାତ୍ ହାତ ବଢ଼ାଇ ଦେଇଛି ବା କିପରି ? ଟିକିଏ ଇତସ୍ତତଃ କଲା । ବୁଢ଼ା କହିଲା, "ମା, ମତେ ଲାଜ କରୁଛୁ ? ମୁଁ ପରା ତୋ ପୁଅ । ପୁଅକୁ ମା ଲାଜ କରେ ନା ।"

ଦାସୀ ଏହି ସମୟରେ ଠୋ ଠୋ କରି ହସି ଦେଇ କହିଲା, "ବହୂ ସାଆନ୍ତାଣିଏ, ଅଚ୍ଛା ବୁଢ଼ା ପୁଅଟିଏ ପାଇଲ ଏକା; କପାଳତ ।" ବହୂଟି ପୁଣି ହସି ଦେଇ କହିଲା, "ଦୂର୍" ।

ବହୂଟି ହାତ ବଢାଇ ଦେଲା । କେଡ଼େ ଟିକିଏ ନିକ ହାତଟି । କେଡ଼େ ସୁନ୍ଦର ଗୋଲ । ଅଙ୍ଗୁଳିଗୁଡ଼ିକ ଚମ୍ପାକଢ଼ି ପରି । ପାପୁଲିଟି ଚୂଲ ଚୂଲ ହେଉଛି । ଶଙ୍ଖାଗୁଡ଼ିକ କି ସୁନ୍ଦର ଦିଶୁଛି । ଏ କଣ ମଣିଷର ହାତ ? ନା, କେହି କାରିଗର ଠାକୁର ଗଢ଼ିଛି ? ସେ ହାତକୁ ବୁଢ଼ା ତାର ମଳିଆ, ରୁକ୍ଷ ହାତରେ ଧରିବାକୁ ସାହସ କଲା ନାହିଁ । ତା ପରେ ବାଁ ହାତରେ ଥରକରି ହାତଟି ଧରି ପରେ ଶଙ୍ଖା କଛିବାକୁ ଲାଗିଲା । ଏ ହାତ, ଶଙ୍ଖାରେ କାଳେ କଟିଯିବ, ରକତ ବାହାରି ପଡ଼ିବ ଯେ । ପୁଣି ଟିକିଏ ରହିଲା । ପୁଣି ଶଙ୍ଖା ପଟିଏ ଆଣି, ଧୀରେ ଧୀରେ, ଅତି ସନ୍ତର୍ପଣରେ,

ଅତି ସାବଧାନତାର ସହିତ ସେ ପଟିକି କାଢ଼ି ନେଲା । ସେ ହାତଟି ଧରିଥିବା ବେଳେ ବୁଢ଼ାର ଆନନ୍ଦର ସୀମା ରହୁ ନ ଥାଏ, ଯେପରି ତାର ଜୀବନର ସମସ୍ତ ସୁଖ, ସମସ୍ତ ଆଶାର ସେହିଠାରେ ତୃପ୍ତି । ସେ ହାତକୁ ପୁଣି ଛାଡ଼ି ଦେବାକୁ ହେଲା । ବୁଢ଼ା ଭାବିଲା, ମୁଁ ପ୍ରତିଦିନ ଏହିପରି ଏ ହାତରେ ଶଙ୍ଖା ପିନ୍ଧାନ୍ତି କି !

ଏହି ସମୟରେ ସେ ଘରର ସାଆନ୍ତାଣୀ ସେଠାରେ ଆସି ପହଞ୍ଚିଲେ । ଶାଶୂଙ୍କୁ ଦେଖି ବହୂଟି ଓଢ଼ଣା ଟାଣି ଦେଇ ପଳାଇଲା । ଶାଶୂ ଦାସୀକୁ ପଚାରିଲେ, "କି ଲୋ, ଶଙ୍ଖା କିଣୁଥିଲୁ କି ?" ଦାସୀ କହିଲା, "ହଁ, ବହୂ ସାଆନ୍ତାଣୀ ଏହି ମୁଠାକ ନେବେ ବୋଲି କହୁଛନ୍ତି ।"

ଶାଶୂ କହିଲେ, "ଦାମ କେତେ ?"

ବୁଢ଼ା—ଶଙ୍ଖା ମୁଠାକ, କି ଦାମ ?

ଶାଶୂ—କେମିତି, କେତେ ଦେବା ?

ବୁଢ଼ା—ମା'ଠାରୁ ମୁଁ କଣ ଦାମ ନେବି ?

ଶାଶୂ ଦାସୀକୁ ପଚାରିଲେ, "କିଲୋ, ମା' କଣ ଲୋ ?"

ଦାସୀ ହସି ହସି କହିଲା, "ସେଇ ପିଲାଟି ବହୂ ସାଆନ୍ତାଣୀଙ୍କ ପୁଅ ବୋଲିକି ।" ଶାଶୂ ବି ହସିଲେ । କହିଲେ, "ଅଚ୍ଛା, ଏଥର ଦାମ ନେଇଯାଅ, ଆଉ ଥରକୁ ପଛେ ଖାଲି ଦେଇଯିବ । ତମେ ଗରିବ ଲୋକ ।"

ବୁଢ଼ା—"ନା, ନା, ମୋ ମା'କୁ ମୁଁ ତ ଦେଉଛି; ମୁଁ ଆଉ ଦାମ ନେବି ନାହିଁ । ଶଙ୍ଖା ମୁଠାକ ଲାଗି ମୁଁ ଗରିବ ହୋଇଯିବି ନାହିଁ ।"

ଏହା କହି ଶଙ୍ଖାର ଶଙ୍ଖାମୁଠାକ ରଖିଦେଇ ବୋଝଟି ଧରି ଏକାବେଳକେ ଚାଲିଗଲା । ଆଉ ଡାକିଲେ ଶୁଣିଲା ନାହିଁ । ଦାସୀ

ପଛରେ ଗୋଡ଼େଇ ଗୋଡ଼େଇ ଗଲା, କିନ୍ତୁ ସେ ଆଉ ଫେରି ଚାହିଁଲା ନାହିଁ ।

ସେହି ଦିନଠାରୁ ସେ ବୁଢ଼ା ଶଙ୍ଖାରି ଦୁଇଦିନେ ତିନିଦିନେ ସେ ଗାଁକୁ ଆସେ । ଶଙ୍ଖାଟା କଣ ଗୋଟାଏ ନିତ୍ୟାନ୍ନ ଦରବ ଯେ ଲୋକେ ରୋଜ କିଣିବେ ! ଅକାଳେ ସକାଳେ, ପୁନେଇ ପରବରେ ସିନା କିଏ ନୂଆ ଶଙ୍ଖା ଖୋଜେ । ବୁଢ଼ାଟା ଖାଲି ଘର ଘର ବୁଲି ଫେରିଯାଏ, କିନ୍ତୁ ଶଙ୍ଖା ବିକ୍ରୀ ତ ବୁଢ଼ାର ଉଦ୍ଦେଶ୍ୟ ନୁହେଁ । ସିଏ ଆସେ ତା'ର ସେହି ନିଜ ମା'ଟିକୁ ଦେଖିବା ପାଇଁ । ଯେଉଁ ଦିନ ଆସେ, କାହାରିକୁ ନ କହି ଦୁଆରଯାକେ ଚାଲି ଆସେ । ବୋଙ୍ଗ ରଖିବାକୁ ହୁଏ ନାହିଁ । ଖାଲି ପାଟିକରି ଡାକି ଦିଏ, "ନୂଆ ଶଙ୍ଖା ନେବ ?" ତା ପାଟି ଶୁଣିଲାକ୍ଷଣି ବହୂଟି କୁଆଡ଼େ ଥାଏ, ଆସି ଦୁଆର ପାଖରେ ଟିକିଏ ଛିଡ଼ା ହୁଏ । ବୁଢ଼ାଟି ଟିକିଏ ଅନାଏ; ଚାହିଁଦେଲାକ୍ଷଣି ବୁଢ଼ାର ମନ ପୂରି ଉଠେ । ପଚାରେ, "ମା, ଆଉ ଶଙ୍ଖା ନବୁ ?" ବୁଢ଼ାର ଇଚ୍ଛା କାଳେ ନବାକୁ କହିବ, ତାହାହେଲେ ତା ମା'ର ଚମ୍ପାଫୁଲିଆ ସୁନ୍ଦର ହାତଟିରେ ସେ ଶଙ୍ଖା କଛି ଦେବ । କିନ୍ତୁ ବହୂଟି ମୁଣ୍ଡ ହଲାଇ ଦିଏ । ବୁଢ଼ା ଫେରି ଚାଲିଯାଏ ।

ଦିନେ ଦିନେ ଯଦି ବହୂଟିର ଆସିବାକୁ ଡେରି ହୁଏ, ସେ ଦାସୀଟି ହୁରି କରିଦିଏ; "ବହୂ ସାଆନ୍ତାଣିଏ, ତମ ପୁଅ ଆଇଲାଣି ।" ବୁଢ଼ା ଦୁଇଥର, ଚାରିଥର 'ନୂଆ ଶଙ୍ଖା ନେବ' ବୋଲି ଡାକିଲାରୁ, ତା ମା'ଟି ଆସି ଛିଡ଼ାହୁଏ । ବୁଢ଼ା ଯେଉଁ ଦିନ ଆସେ, ପ୍ରାୟ ଏହି କଥା, ଏହି ଅଭିନୟ ନିତି ନିତି । ବୁଢ଼ା ଫେରିଲାବେଳକୁ ଭାବେ, "ମା'ର ଅସମାନତାରି ଶଙ୍ଖା ଉପରକୁ ମନ, କେବେ ସେଥିରୁ ମୁଠାଏ ଆଣିଦେବି ।" ଶେଷରେ ଠିକ୍ କଲା, 'ଅସନ୍ତା

ରଜଙ୍ଗକାନ୍ତ ବେଳକୁ ଯୁଅଡ଼ୁ ହେଲେ ମା' ଲାଗି ଅସମାନତାର ମୁଠାଏ ଅଣିବ; ମା ନୂଆ ଶଙ୍ଖା ନାଇବ, ମୋତେ ହାତ ଦେଖାଇବ, ମୁଁ ଶଙ୍ଖା କରୁଦେବ।' ଏହିସବୁ ଭାବିଲା କ୍ଷଣି ବୁଢ଼ାର ମନ ଭାରି ଉତ୍ଫୁଲ୍ଲ ହୋଇଯାଏ । ବୁଢ଼ା ରଜଙ୍ଗକାନ୍ତକୁ ଚାହିଁ ରହୁଥାଏ । ରଜଙ୍ଗକାନ୍ତଟି ଏଥର ତାର ଭାରି ଆନନ୍ଦର ଦିନ; ତା ମା' ଲାଗି ସେ ଅସମାନତାର ଶଙ୍ଖା ଅଣିବ, ମା' କେଡ଼େ ଖୁସି ହେବ ।

ବୈଶାଖମାସ ହେଲା । ବୁଢ଼ା ଲୋକ, ଏଥିରେ ଖରାରେ ରୋଜ ରୋଜ ବାଟ ଚାଲି, ପାଣିପିଅ; ଦେହରେ ସହିଲା ନାହିଁ, ବୁଢ଼ାକୁ ଜ୍ୱର ହେଲା । ଦେଖୁଁ ଦେଖୁଁ ଭାରି ଜ୍ୱର । ଗୋଡ଼ ହାତ ଫୁଲିଗଲା । ସମସ୍ତେ କହିଲେ ବୁଢ଼ା ଆଉ ବଞ୍ଚିବ ନାହିଁ । ବୁଢ଼ାର କିନ୍ତୁ ସେ ଦିଗକୁ ଭାବନା ନାହିଁ । ସେ ସବୁବେଳେ ଭାବି ହେଉଥାଏ ଯେ, କେତେ ଦିନ୍ତୁ ସେ ମା'କୁ ଦେଖିବାକୁ ଯାଇ ନାହିଁ । ସେଥିପାଇଁ ମନଟା ଅଡ଼ୁଟି ପାଡ଼ୁଟି ହେଉଥାଏ ।

ଦେଖୁଁ ଦେଖୁଁ ରଜଙ୍ଗକାନ୍ତ ଅସି ପାଖ ହୋଇଗଲା । ବୁଢ଼ା ଦୁଇମାସ ହେଲା ମା'କୁ ଦେଖିବାକୁ ଯାଇ ନାହିଁ । ଚାଲି ପାରୁଥିଲେ ଯିମିତ ହେଲେ ଦେଖି ଅସୁଥାଆନ୍ତା । କିନ୍ତୁ ରଜକୁ ତ ଅସମାନତାର ଶଙ୍ଖା ମୁଠାଏ ନିଶ୍ଚୟ ଦେବାକୁ ହେବ । ବୁଢ଼ା ଅନେକ କଷ୍ଟରେ ଉଠି ବସି ନିଜ ହାତରେ ଶଙ୍ଖା ତିଆରି କଲା । ଆଉ କେହି କରିଦେଲେ କାଳେ ମା' ମନକୁ ନ ଅସିବ । ଷାଠିଏ ବର୍ଷ କାଳ ଶଙ୍ଖା ଗଢ଼ି ଗଢ଼ି ସେ ଯେତେ ହାତ ସଫେଇ ହାସଲ କରିଥିଲା, ସବୁ ସେଥିରେ ଲଗାଇଲା । ଦିନକ କାମ ଚାରିଦିନ ଲାଗୁ ପଛକେ କାମଟି କିମିତ ସରସ ହେଉ । ଚାରି ଦୁଇଦିନ ଥାଇ କାମ ନିକାଶ ହେଲା । ମନ ଭୋଜି ଫଳ । ଏପରି ଗଢ଼ଣରେ ଶଙ୍ଖା ତା ଜୀବନରେ ତା ହାତରେ କେବେ ଉଠୁରି ନାହିଁ ।

ଶଙ୍ଖା ଦେଖି ବୁଢ଼ାର ମନ ଭାରି ଖୁସି । ତା ମା' ହାତକୁ ଏ ଶଙ୍ଖା ମୁଠିକ ଖୁବ୍ ମାନିବ ।

ରଜ ଆଗଦିନ ପହିଲି ରଜ । ଆଜି ଝିଅ ବୋହୂଏ ନୂଆ ଶଙ୍ଖା, ନୂଆ ଶାଢ଼ୀ ପିନ୍ଧନ୍ତି । ରାତିସାରା ବୁଢ଼ାର ନିଦ ନାହିଁ । ସକାଳୁ ଉଠି ବୁଢ଼ା ଭାବିଲା, "ମୁଁ ତ ଚାଲିପାରୁ ନାହିଁ, କଣ କରିବି ? ଆଜି କିଏ ନେଇଗଲେ ତ ହେବ ନାହିଁ । ମା'କୁ ତେର ଦିନୁ ଦେଖି ନାହିଁ, ସତେ କଣ ଏଥିରୁ ବଞ୍ଚିବ ଯେ,— ଥରେ ଦେଖି ଆସେ । ଆଜି ମା'ର ସେହି ହାତରେ ଶଙ୍ଖା କରୁ ଦେବି ।" ମା'ର ହାତଟି ମନେ ପଡ଼ିଲାକ୍ଷଣି ବୁଢ଼ାର ଗଦାଏ ବଳ ଆସିଲା । ବୁଢ଼ା ସଅଳ ସଅଳ ମୁଠାଏ ଖାଇଦେଇ, ଶଙ୍ଖା ମୁଠିକ ଗାମୁଛାରେ ବାନ୍ଧି ବାହାରିଲା । ଅତି କଷ୍ଟରେ ଭିଡ଼ାଏ ଭିଡ଼ାଏ ପାଦ ପକାଇ ଚାଲିଥାଏ । ପାଞ୍ଚ କୋଶ ବାଟ, ପହୁଞ୍ଚିଲା ବେଳକୁ ବେଳ ଗଡ଼ି ଗଲାଣି ।

ବୁଢ଼ା ଯାଇ ଯେଉଁଠାରେ ଛିଡ଼ାହୋଇ ଡାକୁଥିଲା, ସେହିଠାରେ ଛିଡ଼ା ହେଲା । ମନରେ କେତେ ଆନନ୍ଦ, କେତେ ଉତ୍ସାହ । ଡାକିଲା, "ଶଙ୍ଖା ନେବ ?" କେହି ଶୁଣିଲେ ନାହିଁ । ପୁଣି ଡାକିଲା, "ମା' ଲୋ ! ଶଙ୍ଖା ନବୁ ପରା ।" ତେବେ ବି କେହି ଆସିଲେ ନାହିଁ । ବୁଢ଼ା ଅଧୀର ହୋଇ ପଡ଼ିଲା । ଦୁଇଥର ଡାକି ସାରିଲାଣି, କେହି ଜବାବ ପଦେ ଦେଉ ନାହିଁ । ଥରେ ଡାକିଲେ ତ ମା' ତାର ଆସି ଦୁଆରବନ୍ଧ ପାଖରେ ଛିଡ଼ା ହୋଇ ଯାଉଥିଲା । ପୁଣି ଡାକିଲା, "ମା, ମୁଁ ଆସିଛି । ଶଙ୍ଖା ଆଣିଛି ତୋ ପାଇଁ ।" ଏଇଥର ସାଆନ୍ତାଣୀ ନିଜେ ବାହାରି ଆସିଲେ, ତାଙ୍କ ପଛେ ପଛେ ସେହି ଦାସୀ । ସାଆନ୍ତାଣୀଙ୍କୁ ଦେଖି ବୁଢ଼ା କହିଲା, "ମୋ ମା' କାହିଁ, ମୁଁ ତା ପାଇଁ ଆସମାନତାରା ଶଙ୍ଖା ଆଣିଛି, ରଜରେ ପିନ୍ଧିବ ।"

ଦାସୀ ତ ଏତେ ବେଳକୁ ଜୁହାର କରି କହିବାର ଦାଅନ୍ତାଣି—ସେ କିଛି କହିଲା ନାହିଁ । ସାଆନ୍ତାଣୀ ଧୀରେ ଧୀରେ କହିଲେ, "ନା, ଶଙ୍ଖା ଲୋଡ଼ା ନାହିଁ ।" ବୁଢ଼ା କହିଲା, "ନା, ନା, ମୁଁ ମୋ ମା' ଲାଗି ବଡ଼ ଶରଧାରେ ଆଣିଛି ।"

ସାଆନ୍ତାଣୀ—ନା, ଶଙ୍ଖା କେହି ନେବେ ନାହିଁ, ଯା ।

ବୁଢ଼ା—ହଉ, ଶଙ୍ଖା ନ ନେଲେ ନାହିଁ, ମୋ ମା'କୁ ଥରେ ଡାକି ଦିଅ ମୁଁ ଦେଖିବି । କେଉଁ ଦିନରୁ ଦେଖି ନାହିଁ ।

ସାଆନ୍ତାଣୀ—ଦେଖା ହୋଇ ପାରିବ ନାହିଁ ।

ବୁଢ଼ା ମୁଣ୍ଡରେ ବଜ୍ର ପଡ଼ିଲା, "ଦେଖା ହୋଇ ପାରିବ ନାହିଁ । ମୋ ମା'କୁ ମୁଁ ଥରେ ଦେଖି ପାରିବି ନାହିଁ ।" ବୁଢ଼ାର ଆଖି ଛଳ ଛଳ ହୋଇ ଉଠିଲା । ସେ କାନ୍ଦ କାନ୍ଦ ହୋଇ କହିଲା, "ଥରଟିଏ ଦେଖିବି, ମୁଁ ଆଉ ବସିବି ନାହିଁ ।"

ସାଆନ୍ତାଣୀ ଦାସୀକୁ କହିଲେ, "ଯା, ବୋହୂକୁ ଡାକ ଦେ ।" ଦାସୀ ଚାଲିଗଲା । କିଛି କ୍ଷଣ ପରେ ବୋହୂ ଆସି ଦୁଆର ପାଖେ ଛିଡ଼ା ହେଲା । ସେଇଠି ସେ ସବୁଦିନେ ଛିଡ଼ା ହୁଏ । ଆସିଲା ବେଳକୁ ଝୁମୁରି ଝୁମୁରି ହୋଇ ଚାଲି ଆସେ । ଛିଡ଼ା ହୋଇ ବୁଢ଼ାକୁ ଚାହିଁ ଦିଏ । ତାର ହସ ହସ ମୁହଁଟି ଦେଖି ବୁଢ଼ାର ଆନନ୍ଦର ସୀମା ରହେ ନାହିଁ । ଆଜି ନିଃଶବ୍ଦରେ ଆସି ଛିଡ଼ା ହେଲା । ସେ ଗୋରି ଅଙ୍ଗରେ ଲେଖାଏଁ ନାଲି ଡହଡ଼ ଶାଢ଼ୀ ନାହିଁ କି କୁମ୍ଭ କନା ଦକ୍ଷିଣୀ ପାଟ ନାହିଁ । ଗୋଡ଼ ଦୁଇଟା ଲଙ୍ଗଳା, ପିନ୍ଧିଛି ଖଣ୍ଡେ ଧଳା ଥାନ ଲୁଗା । ବୁଢ଼ାର ଦେହ ଥରି ଉଠିଲା, ମୁଣ୍ଡ ଘୂରିଗଲା, ବୁଢ଼ା ଆଖି ବୁଜି ପକାଇଲା । ପୁଣି ଚାହିଁ ଦେଲା ବେଳକୁ ତାର ସେହି ହାତଟି ଦିଶିଗଲା—ହାତରେ କିଛି ନାହିଁ । ବୁଢ଼ା କୋ

କେ କର ରଡ଼କର ଉଠିଲା । ବହୁଟି ଫେରପଡ଼ି ଗୁଲିଗଲା । ବୁଢ଼ା କହିଲା, "ମା'ଲୋ, ମୁଁ ନ ମର କାହିଁକ ତୋତେ ଦେଖିବାକୁ ଅସିଲ । ଏହ ତା ଦେଖିବା ଲଗି ନା, ଲୋ ମା !" ବୁଢ଼ା ଅଉ କହ ପାରଲା ନାହିଁ । ଗାମୁଛାରୁ ତାର ବଡ଼ ଯତନର, ବଡ଼ ଶରଧାର ଶଙ୍ଖା ମୁଠିକ ଫିଟାଇ ପକା ବାହାରେ କଚୁଡ଼ ଦେଲା । ଶଙ୍ଖା ମୁଠାକଯାକ ଚୂନା ହୋଇଗଲା । ତହୁଁ ସେ ଏକମୁହାଁ ହୋଇ ଫେର ଗୁଲିଗଲା । ଦାସୀ ଓ ଶାଶୂ ରଡ଼କର ଉଠିଲେ ।



## ବିଖ୍ୟାତ କଟକରୁ ଅଖ୍ୟାତ ପଲ୍ଲୀ

ଓଡ଼ିଶାର ଖୁବ୍ କମ୍ ଲୋକ ଯେଉଁ ଗାଁଅ ଖଣ୍ଡିକୁ ଜାଣିଛନ୍ତି ସେହି ଗାଁଅଟି ନା ହେଉଛି 'ସିଆଳି' । ସିଆଳି ଗାଁଅକୁ ବେଶୀ ଲୋକ ଜାଣିବାର କିଛି କାରଣ ନାହିଁ । ସେ ଗାଁ ଭିତରେ ପକ୍କାଘର ନାହିଁ, ସେ ଗାଁଅକୁ ଭଲ ବାଟ ନାହିଁ, ସେ ଗାଁଅର ଲୋକେ ପାଠ ମଧ୍ୟ ପଢ଼ି ନାହାନ୍ତି । ଗୋବର ଗାଡ଼ିଆରେ କଇଁ ଫୁଟିଲା ପରି ଗୋପାଳ ଯେ କିପରି ସେଠାରେ ଫୁଟିଲା, ତାହା ହେଉଛି ଓଡ଼ିଶାର ନାନା ଆଶ୍ଚର୍ଯ୍ୟଜନକ ଘଟଣା ଭିତରୁ ଗୋଟିଏ ।

ଓଡ଼ିଶା ମୁଲକରେ ସିଆଳି ବୋଲି ଗୋଟିଏ ଗାଁଅ ଅଛି, ଅଜି ସେହି ଗାଁଅରେ ତାର ଘର ବୋଲି ଗୋପାଳ କେବେ ଭୁଲରେ ସୁଦ୍ଧା କାହା ଆଗେ ନିଜର ପରିଚୟ ଦିଏ ନାହିଁ । ଗାଁଅ ନାଁ ପଚାରିଲେ ସେ ଗୋଟାଏ ଗୁଳାକ ବଡ଼ ଥାନାର ନାଁଟା କହିଦିଏ । କଥାଟା ସେଥିରେ ପ୍ରାୟ ଘୋଡ଼େଇ ହୋଇଯାଏ ।

ସିଆଳିର ଲୋକେ ମୁଣ୍ଡ ଝାଳ ତୁଣ୍ଡେ ମାରି ପେଟ ପୋଷନ୍ତି । କିଏ ମୂଲ ଲାଗେ, କିଏ ପାନପରିବା ବିକେ, କିଏ ବା ପାଇଟି

ନ ପାରିଲେ ଉଭୟ ଫେରି ଚାଲେ । ଏ ଗୁଡ଼ାକ ସମାଜର ନିତାନ୍ତ ତଳ ଶ୍ରେଣୀ ଲୋକଙ୍କ କାର୍ଯ୍ୟ—ଗୋପାଳ ଏ କଥା ପାଠ ପଢ଼ି ବୁଝିଛନ୍ତି । ତେଣୁ ସେ କଟକର ପଢ଼ାଘର ଭିତରେ ଏଗୁଡ଼ାକୁ ଆତ୍ମୀୟ ଦୃଷ୍ଟିରେ ବା ଶ୍ରଦ୍ଧା ଚକ୍ଷୁରେ ଦେଖେ ନାହିଁ । ଏ କଥା କଳ୍ପନା କଲେ ତାର ରୋମ ଟାଙ୍କୁର ଉଠେ । ଭାବେ, ପିଅଳି ଗାଁ ଟା ଯେବେ ସମତଳ ଅଞ୍ଚଳରେ ଥା ସେ ଆସି ବସିଛି ଶୋଷଣଙ୍କର ଶୃଙ୍ଖଳରେ । ତାର ପାଠ ଠାରୁ ଗାଁ ଲୋକଙ୍କ ସ୍ଥାନ କେତେ ତଫାତ ।

ପିଲାଦିନର ଅନେକ କଥା ପଢ଼ାଘର ଭିତରେ ଗୋପାଳର ମନେ ପଡ଼େ; ମାତ୍ର ଗୋଟିଏ କଥାକୁ ସେ କେବେହେଲେ ମନରୁ ପାସୋରି ପାରେ ନାହିଁ । ସେ ନିତାନ୍ତ ଛୋଟ ଥିଲାବେଳେ ତାର ବାପା ଜଣେ ତହସିଲଦାରଙ୍କର ପିଅନ ଥିଲେ । କାଠ ବିକା ବ୍ୟବସାୟ ଛାଡ଼ି ସେ ପିଲାକୁ ଧରି ତହସିଲଦାରଙ୍କୁ ଗୋଟିଏ ବର ମାଗିଥିଲେ । ପାଞ୍ଚବର୍ଷ ପରେ ବଦଳି ହେବା ସମୟରେ ତହସିଲଦାର ବାବୁ ଅନୁରକ୍ତ ଭୃତ୍ୟ ପ୍ରତି ବଡ଼ ଶୁଭ ଦୃଷ୍ଟି ପକାଇଲେ । ତାହାରି ଫଳରେ ଗୋପାଳ କଟକ କଲେଜ ପର୍ଯ୍ୟନ୍ତ ଯାଇ ପାରିଛନ୍ତି । ଏବେ ତହସିଲଦାର ନାହାନ୍ତି କି ତାର ବାପା ନାହାନ୍ତି ।

ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ଜଳମଣିଙ୍କ କରୁଣ ଆହ୍ୱାନରେ ଓଡ଼ିଶା ବୁକୁର କଠୋର ପଥର ଖଣ୍ଡ ଫୁଟା ତରଳି ଯାଉଥିଲା । ମହାନଦୀର କରାଳ ବନ୍ୟାରେ ଶହ ଶହ ଲୋକ ଭାସିଗଲେ, ହଜାର ହଜାର ଘର ଭାଜିଗଲା, ବାଲି ଉପରେ ସାତଫୁଟ ପାଣି ଠିଆହେଲା, ଗଛ ଉପରେ ମଣିଷ ଆଶ୍ରୟ ନେଲା, ସ୍ଥଳ ନ ପାଇ ଚାଳ ଉପରେ ମା ସନ୍ତାନ ପ୍ରସବ କଲା, ଗୁଣ୍ଡ ନ ପାଇ

ପିତା ପୁତ୍ରର ଶବକୁ ଯାକଧରି ଗଛରେ ଲାଗି ରହିଲା—ଏସବୁ କାହାଣୀ ଶୁଣି ପଥର ତରଳିବା ଅସମ୍ଭବ କଣ ?

ଲହୁଲମଣିଙ୍କ ଏ ଡାକ ସମସ୍ତଙ୍କ କାନରେ ବାଜିଲା । କଲେଜ ଭିତରର ଏକ କୋଠରୀରେ ଥାଇ ଗୋପାଳ ମଧ୍ୟ ଏକଥା ଶୁଣିଲା । ଦଳ ଦଳ ଛାତ୍ର ବନ୍ୟାରେ ଲମ୍ଫ ଦେବାକୁ ବାହାରିଲେ । ବନ୍ୟାର ଏ ଅତ୍ୟାଚାରରେ କେତେ ଯୁବକ ପ୍ରାଣରୁ ଏପରି ତପ୍ତ ଶ୍ୱାସ ଉଠିଲା ଯେ କଲେଜର ଭିତ୍ତି ପର୍ଯ୍ୟନ୍ତ ଥରିଗଲା—ଓଡ଼ିଶା ଯେବେ ଗଲା, କାହା ପାଇଁ କଲେଜ ?

ଗୋପାଳ ତ ସେ ଦିନ ଭାତ ଥାଳି ପାଖେ ବସିଲା ନାହିଁ । ରାତିରେ ଶେଯରେ ଶୋଇ ପାରିଲା ନାହିଁ ମଧ୍ୟ । ସନ୍ଧ୍ୟାବେଳୁ ସେ ଚଉକି ଉପରେ ବସି ବସି ତନ୍ଦ୍ରାଗଲା । ତାର ତନ୍ଦ୍ରା ଭିତରେ ଗୋଟାଏ ଅତୀତ ଜୀର୍ଣ୍ଣ ଜଗତର ନିତାନ୍ତ ଅସ୍ପଷ୍ଟ ଛାୟା ଦେଖାଗଲା । କି ପ୍ରାଣହୀନ ବେଶ ସେହି ଜଗତର ! ଗ୍ରାମ ସହରର କୋଳାହଳ ଭିତରେ ଗୋଟିକର ମୁହଁରେ ହେଲେ ହସ ନାହିଁ । ବିଲରେ ପାଣି, ଘରେ ପାଣି, ପ୍ରତି ଆଖିରେ ପାଣି । ବିଲ ପଡ଼ିଆର କୂଳଥଳ ମିଳୁନାହିଁ, ହୃଦୟରେ ଭାବନାର କୂଳଥଳ ମିଳୁନାହିଁ; ଏ ପ୍ରାଚୀନ ଜାତିଟାର ଶକ୍ତିଶାଳୀ ବଂଶଧରଗଣ ଶକ୍ତି ହରାଇ କୁଆଡ଼େ ଭାସି-ଯାଉଛନ୍ତି ତାହା କଳ୍ପନା କରି ହେଉ ନାହିଁ । ସବୁଆଡ଼େ ହାହାକାର, ସବୁଆଡ଼େ ଅଭାବ । ସେହି ଭିତରେ ଗୋପାଳ ଦେଖି ପାରିଲା ତାର ସେହି ପୂର୍ବପରିଚିତ ସିଅଳ ଗାଁର ଦଶା । ସେ ଗାଁର ଲୋକେ ଭାସିଯାଉଛନ୍ତି, ଗାଁର ପୂର୍ବପଟ ସେହି ଭାଗବତ ଘରଟା ଆଉ ନାହିଁ । ଗ୍ରାମଦେବତୀ 'ବାଉତେଇ'ଙ୍କ ମଣ୍ଡପର ପଥର ଗୁମ୍ଫ କେବଳ ପାଣି ଉପରକୁ ଦେଖାଯାଉଛି । ଗାଁର ଯେଉଁ ଉଚ୍ଚ ମଶାଣି ଭୂଇଁ ଖଣ୍ଡିକ ସମସ୍ତଙ୍କର ଅନ୍ତ୍ୟସ୍ଥଳ, ସେଠାରେ ବଡ଼

ବରଗଛକୁ କିଏ ଅଶ୍ରୟ ଦେଇପାରି ନାହିଁ ! ତାର ବୁକୁ ଦାଉଁ ଦାଉଁ ପଡ଼ିଲା ଉଠିଲା । କେବେ ତ ସେ ପକାଘରର ବସି ପିଅଳ କଥା ଭାବି ନାହିଁ, ଏତେ ଦିନେ ସେହି ସ୍ମୃତି କାହିଁକି ଜାଗିଲା, ସେ ତତ୍ତ୍ୱ ସେ ଖୋଜିବାକୁ ଚେଷ୍ଟା କଲା ନାହିଁ । ସେ କେବଳ ଆଖି ଆଗରେ କେତେ ଗୁଡ଼ାଏ ବିଭଙ୍ଗ ଶବ ଦେଖିଲା; ବେଳେ ବେଳେ ଚମକିଲା ପରି ଚଉକିରେ ସିଧା ହୋଇ ବସି ଗୋଟାଏ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲା । କଇଁଫୁଲ ପରି ଧଳା ଶେଯଟାରେ ସେ ବହୁବାର ଏପାଖ ସେପାଖ କଡ଼ ଲେଉଟାଇଲା । ଆଖି ଫିଟାଇ ରଖି ଯାହା ଚିନ୍ତାକଲା ଆଖି ମୁଦିରଖି ସେହିକଥା ମଧ୍ୟ ଭାବିଲା । ଗୋଟାଏ କ୍ଷୁଦ୍ର ପଲ୍ଲୀର ହତଭାଗାଙ୍କ ଚିତ୍କାର ତାର ପ୍ରାଣକୁ ବେଳେ ବେଳେ ଚମକାଇ ଦେଲା । ବରଫ—ଶୁଭ୍ର କାନ୍ତ ଦେହରେ ସେ ପ୍ରେତଚ୍ଛାୟା ଦେଖି ପାରିଲା । କିଏ କହିଲା, 'ଗୋପାଳ ଗୋପାଳ', କିଏ କହିଲା—'ବାବୁ ରେ', କିଏ କହିଲା—'ଧନ ରେ', କିଏ କହିଲା—'ଗୋପାଳ ବାବୁ !' ଗୋପାଳ ଅଉ ଶୋଇବ କ'ଣ ?

ଦିନେ ସ୍ୱେଚ୍ଛାସେବକ ଦଳ ବନ୍ୟା ଅଞ୍ଚଳରେ କାମ କରିବା ପାଇଁ ଯେତେବେଳେ ବାହାରିଲେ, ଗୋପାଳ ମଧ୍ୟ ସେମାନଙ୍କ ସଙ୍ଗେ ବାହାରିଲା । ବାହାରିବା ଆଗରୁ ସ୍ୱେଚ୍ଛାସେବକମାନଙ୍କୁ ବହୁ ଆୟୋଜନ କରିବାକୁ ହେଲା । କେତେଦିନ ପାଇଁ ଲୁଗାପଟା ଓ ଖାଦ୍ୟପେୟର ବ୍ୟବସ୍ଥା ହେଲା । କଲେଜ ଭିତରୁ ଗାଁ ଭିତରକୁ ଯିବା ଅନ୍ୟ ସ୍ୱେଚ୍ଛାସେବକଙ୍କ ପକ୍ଷରେ ଯାହା ହେଉନା କାହିଁକି, ଗୋପାଳ ପକ୍ଷରେ ଗୋଟାଏ ନୂତନ କଥା । କଲେଜରୁ ଗାଁ ତ ଜମ୍ ଉପାର୍ ନୁହେଁ । କେତେଦିନ ରହିବାକୁ ହେବ କିଏ ଜାଣେ ? ସେଥିପାଇଁ ଦଶ ପାଞ୍ଚ ଖଣ୍ଡ ଅଧିକା ଲୁଗା ନ ହେଲେ ନ ଚଳେ ।

ଯେଉଁଠାରେ ଲୋକେ ଖାଇବାକୁ ପାଉନାହାନ୍ତି ସେଠାରେ ପ୍ରଚଳନ ଜଳଖିଆ ବା ମିଲର ଲୁଫାଡ଼୍ ? ତେଣୁ ସମ୍ପ୍ରିଶଦଅ ଲ୍ୟାରୋଟ୍ସ ସହିତ କମଳା, ଅଙ୍ଗୁର, ଖଜୁରୀ, ଚିନି, ଅଟା, ଷ୍ଟୋଭ ପର୍ଯ୍ୟନ୍ତ ବ୍ୟବସ୍ଥା ଗୋପାଳ ଅନ୍ୟମନସ୍କ ଭାବରେ କରି ପକାଇଲେ । ବନ୍ୟା ସ୍ରୋତ ପଛେ ପଛେ ସ୍ୱେଚ୍ଛାସେବକ ସ୍ରୋତ ଗାଁ ଗହଳକୁ ଚାଲିଲେ ।

ଦିଗନ୍ତ ବିସ୍ତୃତ ବାଲି ପଡ଼ିଆ—ସେ ଭିତରେ ଫସଲର ଚିହ୍ନ ମୁଦ୍ଧା ନାହିଁ । ବନ୍ୟାର କରାଳ ଜିହ୍ୱା ସବୁ ଶେଷ କରି ଦେଇଛି । ଦୂରକୁ ଦେଖିଲେ ଠାଏ ଠାଏ ଗଛ ଗହଳରେ କେତେଟା ଘର ଦେଖାଯାଉଛି, ତାହାରି ଭିତରେ ହତଭାଗା କୃଷିଜୀବୀଙ୍କର ସଂସାର ! ସେ ଭିତରକୁ ଯିବାକୁ ହେଲେ କାଦୁଅ, ପାଣି, କଣ୍ଟା, ଝୁଞ୍ଚା, ଅମଡ଼ା ରାସ୍ତା—ସବୁ ଭେଟିବାକୁ ପଡ଼ିବ । ସେ ଭିତରର ଜୀବଙ୍କ ସେବା କରିବାକୁ ହେଲେ ନିଜକୁ ମଶା, ମେଲେରିଆ, ଜ୍ୱର, ମହାମାରୀ, ବିଷଜନ୍ତୁଙ୍କ ସମ୍ମୁଖୀନ ହେବା ଛଡ଼ା ଅନ୍ୟ ପନ୍ଥା ନାହିଁ । କଟକ—ବ୍ରହ୍ମପୁରର ରାଜରାସ୍ତା ସେଠାରେ ନାହିଁ କି ପ୍ରଚାର ନିଡ଼ଦା ସେଠାରେ ନାହିଁ । ତେଣୁ କଟକ କୋଠରୀରୁ ଯେ ଏହା କଳ୍ପିତ ହୁଅରେ, ତାହା ଗୋପାଳ ବୁଝିବାକୁ ବାକି ରହିଲା ନାହିଁ ।

କଟକ ଛାଡ଼ିବାବେଳେ ଗୋପାଳର ମନ ଯେପରି ଥିଲା ବନ୍ୟା-ଅଞ୍ଚଳର ମାଧୁରୀ ନେତ୍ରରୁ ଅସିଲା ବେଳକୁ ତହିଁର ଘୋର ପରିବର୍ତ୍ତନ ଘଟିଯାଇଛି । ଭଲ ଭଲ ରାସ୍ତା, ତାକୁ ଲାଗୁଛି ଠିକ୍ ଜନବର୍ଷ ପରି । ଭୁଲ୍ ଅପିବାରେ ତାର ଗୃହଟା ସସ୍ତିର ଭଳି ଧୋତି କାଦୁଅ ଲୁଗାରେ ନଷ୍ଟ ହୋଇ ଯାଇଛି । ସାଙ୍ଗରେ ନୋହୁଥିବା ପୁଷ୍ପରେ ଜଳପାଣି ଝରୁଥିବା ସ୍ଥଳରେ ପାଣ୍ଟରେ

ଭଲ ପାଣି ଟୋପାଏ ତାକୁ ପିଇବାକୁ ମିଳୁ ନାହିଁ । ଯୋତା ଲଗାଇବାର ଅଦୌ ସୁବିଧା ଘଟି ନାହିଁ । ତେଣୁ ଅନଭ୍ୟସ୍ତ ଗୋଡ଼ରେ ଦୁଇଟା କଣ୍ଟା ଗଳିଛି ଓ ଗୋଟାଏ ଗେଣ୍ଡା କାଟିଛି । ଆଣିଥିବା ଜଳଖିଆ ଅଧାରୁ ବେଶୀ ଶେଷ ପାଇଲାଣି । ଏପରି କ୍ଷେତ୍ରରେ ତାର ମନ ଖୁବ୍ ବିଗିଡ଼ି ଯାଇଛି ।

ଗ୍ରୁଏଲ ଦିଆ କେନ୍ଦ୍ର—କେବଳ ସେଠାରେ ଜନ ସମୁଦ୍ର । ଦରିଦ୍ର ନିଃସହାୟ ପଲ୍ଲୀବାସୀ ପ୍ରାଣପ୍ରିୟ ପିଲା କୁଟୁମ୍ବ ଧରି ମୁଠାଏ ମୁଠାଏ ଗ୍ରୁଏଲ ପାଇଁ ସେଠାରେ ଜମା ହୋଇଛନ୍ତି—ମୁଠାଏ ପାଇଲେ ପୁଅଠାରୁ ବାପ, ସ୍ୱାମୀଠାରୁ ସ୍ତ୍ରୀ ଭିଡ଼ି ଓଟାରି ଗିଳି ପକାଇବାରେ କୁଣ୍ଠାବୋଧ କରୁ ନାହାନ୍ତି । ସେଠାରେ ଗୋପାଳର କର୍ତ୍ତବ୍ୟ ? ସେ ଗୋଟାଏ ଦୀର୍ଘଶ୍ୱାସ ପକାଇଲା । ତା ପରେ ଧୀରେ ଧୀରେ ରୁମାଲରେ ମୁହଁ ପୋଛି, ତାର ଇସ୍ତ୍ରି ଦିଆ ଲୁଗା କାହା ଦେହକୁ ନ ଲାଗିଲା ପରି ବଡ଼ ସାବଧାନରେ ଠିଆ ହେଲା । କିନ୍ତୁ ଯୁଆଡ଼େ ତ କଙ୍କାଳ, ଯୁଆଡ଼େ ତ ଦରିଦ୍ର, ସେ କାହାକୁ ତିରସ୍କୃତ ହୋଇ ରହିବ ? ଏଣେ ଦୁର୍ଭିକ୍ଷ ଜର୍ଜର, ସେ ମୂର୍ତ୍ତି ଗୁଡ଼ିକ ଦେଖିବାରେ ଅଭ୍ୟସ୍ତ ହେଲେ ମଧ୍ୟ ସେମାନଙ୍କ ବ୍ୟବହାରରେ ନିତାନ୍ତ ଉଦ୍ବିଗ୍ନ ହୋଇ ଉଠିଲା । କିଏ ପାଖକୁ ମାଡ଼ି ଆସୁଛି ତ କିଏ ଉପରେ ପଡ଼ୁଛି । କିଏ କୁର୍ତ୍ତାକାନି ଧରି ଭିଡ଼ୁଛି, କିଏ ହାତ ଧରି ଟାଣୁଛି । ପ୍ରତି ମୁହୂର୍ତ୍ତରେ ତାକୁ ବ୍ୟତିବ୍ୟସ୍ତ ହେବାକୁ ପଡ଼ୁଛି । ମନ ନିତାନ୍ତ ତିକ୍ତ ହୋଇ ଉଠୁଛି । କେଡ଼େ ବୋକା ଲୋକଗୁଡ଼ାକ । ଭଦ୍ରାମି ଜାଣନ୍ତି ନାହିଁ ? ଖାଇବାକୁ ନାହିଁ ବୋଲି ଭଦ୍ରଲୋକର ଲୁଗା ଭିଡ଼ିବେ ? ଛି !

ଖାଲି ଯେ ଗୋପାଳ ଏକଥା ମନରେ ଭାବିଲା ତା ନୁହେଁ, କାର୍ଯ୍ୟରେ ମଧ୍ୟ ଦେଖାଇ ଦେଲା । ବିରକ୍ତ ହେଲା, ନାକ ଟେକିଲା,

ହାତ ଛୁଆଁଉଛନ୍ତି, ପୋପାଡୁଛନ୍ତି ପରି ଗୃହକୁ ଦେଖନ୍ତି । ଦରିଦ୍ର ପଲ୍ଲୀବାସୀ ତଥାପି ବ୍ୟବହାର ଶିଖି ପାରିଲେ ନାହିଁ—ଏଇ ହେଉଛି ଗୋପାଳ ମନରେ କଷ୍ଟ ।

ଗୋପାଳଠାରୁ ସମସ୍ତେ ଗୃହକୁ ନିଅନ୍ତି, କିନ୍ତୁ ଗୋପାଳ ଦେଖେ, ଅର୍ଗଳି ପାଖେ ଗୋଟିଏ ବୁଢ଼ା କେବଳ ଠିଆ ହୋଇ ଫେରିଯାଏ । ସେ ପାଖକୁ ଆସି ମାଗେ ନାହିଁ କି ମାଗିବା ପାଇଁ କାହାକୁ କହେ ନାହିଁ । ଗୋପାଳ ତାକୁ ଦେବ ବୋଲି ବସୁରେ; ମାତ୍ର ଗହଳ ପାର ହୋଇ ଯାଇ ଦେଇପାରେ ନାହିଁ । ଦିନେ, ଦୁଇଦିନ, ଗୃହଦିନ ଗଲା; ବୃଦ୍ଧର ସେହି କରୁଣ ଦୃଷ୍ଟି ଗୋପାଳ ଭୁଲି ପାରିଲା ନାହିଁ । କେବଳ ପରିଚିତ ମୁହଁ ପରି ତାକୁ ଜଣାପଡ଼ିଲା । ଦିନେ ଆଗରୁ ଲୋକ ଆଡ଼େଇ ଆଡ଼େଇ ସେ ଯାଇ ବୃଦ୍ଧ ପାଖେ ପହଞ୍ଚିଲା । ପଚାରିଲା—

"ନେଲଣି ?"

ବୃଦ୍ଧ ମୁଣ୍ଡ ହଲାଇ କହିଲା—"ହଁ ।"

"କେତେବେଳେ ଠିଆ ହୋଇଛ ?"

ବୃଦ୍ଧ ତାର ଶୁଖିଲା ଧଳା ଛେପ ଲାଗିଥିବା ଓଠକୁ ଶୁଖିଲା ଜିଭରେ ଗୃଟି ଥରେ ଦିଥର ପାଟି ବୁଲାଇଲା । ତା ପରେ ଗୋପାଳ ମୁହଁକୁ ଥୁଥୁ କରି ଦୁଇ ଲେଣ୍ଡା ଛେପ ପକାଇ ଆଖି ତରାଟି ଗୃହିଁ ରହିଲା ।

ଖୁବ୍ ଚହଳ ତ ପଡ଼ିଗଲା, ଗୋପାଳର ମୁହଁ କଳା ପଡ଼ିଗଲା ! ସମସ୍ତେ କହିଲେ—"ଏଅଳର ସାହସ କଲେ କଣ ?" ଗୋପାଳ ସେ ରାତି ରାତି ରାଗ, ଅପମାନ, ବିରକ୍ତିରେ କଟକ କୋଠରୀ ଅଭିମୁଖେ ଯାଉଥିଲା । ତାର ଗୃହଦିନ ପରେ କଟକରେ ଜହ୍ଲମଣି ସାଧାରଣ ସଭାରେ ବାଉ ବାଉ ହାତ ପସାରି ମାଗିଲେ, "କାହାର

ଛିଣ୍ଡାଲୁଗା ଅଛି, ତାହା ମଧ୍ୟ ଦେଲେ ଦରିଦ୍ରର ସେବାରେ ଲାଗିବ ।

ଦରିଦ୍ରର ସେବା ! ଛିଣ୍ଡାଲୁଗା ! ଗମ୍ଭୀର ବିରକ୍ତିରେ ମୁଣ୍ଡ ପୋତି ବସିରହି କଲେଜ ଘରେ ଗୋପାଳ ପୁଣି ଚମକିଲା । ନିଜର ଲୁଗାକୁ ଚାହିଁଲା—ଦେଖିଲା ଖଣ୍ଡିଏ ସୂତା ଛିଣ୍ଡା ନାହିଁ, ଖଣ୍ଡିଏ ସୂତା ଶିଥିଳ ନାହିଁ ! ପୁଣି ମୁଣ୍ଡ ପୋତିଲା, ପୁଣି ଚେଷ୍ଟାକଲା । ଯେ ଭଦ୍ରାମି ଜାଣେ ନାହିଁ, ତାର ପୁଣି ସେବା କରିବାକୁ ହେବ ? ଗୋପାଳ ଏଥିର ତତ୍ତ୍ୱ ଖୋଜି ପାଇଲା ନାହିଁ । ଛିଣ୍ଡା ଲୁଗା ! ପୁରୁଣା ଲୁଗା । କାହା ପାଇଁ ? ଗୋପାଳ ମୁଣ୍ଡ ଟେକି ନିଜର ଲୁଗାକୁ ପୁଣି ଚାହିଁଲା—ସଫା ଆଖି ମେଲାକରି ଦେଖିଲା—ସେହି ଲୁଗାରେ ସେହି ଅର୍ଗଳି ପାଖ ବୃଦ୍ଧର ଛବି । ଆଖି ମଳିଲା, ରୁମାଲରେ ଆଖି ପୋଛିଲା । ରୁମାଲକୁ ଚାହିଁ ଦେଖିଲା ସେଥିରେ ଛେପ ଲାଗିନାହିଁ ! ତଥାପି ସେହି ବୃଦ୍ଧ ଆଖିଆଗରେ । ବୃଦ୍ଧ—ବାସ୍ତବିକ ବୃଦ୍ଧ । କେବଳ ହାଡ଼ ଉପରେ ଚମ ଘୋଡ଼ଣି ହୋଇଛି । ବିରାଟ ବପୁର ଏକ କଙ୍କାଳ ସେ ! ସେ କାନ୍ଦୁନାହିଁ, ସେ ହସୁନାହିଁ । ଉଲଗ୍ନ ବେଶରେ ଲୁଗାର ପ୍ରତି ସୂତା ଦେହରେ ସେ ଜଡ଼ିତ ହୋଇ ରହିଛି । ଭକ୍ତଳପଣିଙ୍କର ଏହି କି ସେହି ଦରିଦ୍ର !! ଏହାର ସେବାପାଇଁ ଛିଣ୍ଡା ଲୁଗା !! ଗୋପାଳ ରୁମାଲରେ ମୁହଁ ପୋଛୁ ଠିଆହେଲା । ଦୁଆର ମୁହଁରେ ଶବ୍ଦ ହେଲା—ଦିଅ, ଲୁଗାଦିଅ । ଲୁଗାଦିଅ । ସ୍ୱେଚ୍ଛାସେବକ ମୁହଁକୁ ଚାହିଁ ଗୋପାଳ ପ୍ରଥମେ କିଛି କହି ପାରିଲା ନାହିଁ । ଜଣେ କହିଲା—"ସେଟା ଦିଅ", ଜଣେ କହିଲା—"ଏଟା ଦିଅ ।" ଗୋପାଳ ମନାକଲା ନାହିଁ । ହାତରେ ଭିଡ଼ି ଆଣି ବଢ଼ାଇ ଦେଲା । ସତେ ଯେପରି ସେହି ସ୍ୱେଚ୍ଛାସେବକଙ୍କ ଭିତରେ ସେହି ବୃଦ୍ଧଙ୍କୁ ସେ ଦେଖି ପାରିଲା । ଖଣ୍ଡିକୁ ଖଣ୍ଡ ଲୁଗା,

ଭାମିଜ ଦେଇ ଦେଇ ପ୍ରଶ୍ନ ପଚାରିଲେ—"କଣ ବୁଢ଼ା ପାଇଁ ?" ସମସ୍ତେ ହସି ଉଠି କହିଲେ—"ନା, ପିଲା, ବୁଢ଼ା, ବୁଢୀ, ଯୁବକ, ଯୁବତୀ ସମସ୍ତଙ୍କ ପାଇଁ ।" ଗୋପାଳ ମୁହଁ ପୋଛି ପୁଣି ମୁହଁ ପୋଛିଲା ।

ଏହି ଘଟଣାର ମାସକ ପରେ ଗୋପାଳ ଯେତେବେଳେ ଆଖି ଛଳ ଛଳ କରି, ଅଣ୍ଟୁଉଣା ଲୁଗା ଖଣ୍ଡିଏ ପିନ୍ଧି ମାଧସ୍ତର କେନ୍ଦ୍ରର ସେହି ଅଗଣା ପାଖେ ଠିଆ ହୋଇ ଗୁଳି ଦେଉଥିଲା, ସିଆଳି ଗାଁର ବୃଦ୍ଧ ସାନ୍ତର ବାଢ଼ଉଚ ଦେଇ ଗୋପାଳର ହାତ ଧରି କହି ପକାଇଲେ—

"ବାବୁ, ଉଜ୍ଜ୍ୱଳମଣିଙ୍କ ସାଥିରେ ଏବେ ତୁ ଗାଁକୁ ଫେରି ଆସିଲୁ ?"

ଗୋପାଳର ମୁହଁ ହସରେ ଫାଟି ପଡ଼ିଲା । କହିଲା—"ହଁ, ଫେରି ଆସିଲି ତମରି ଯୋଗୁଁ । ତମର ଛେପ ମୋ ଆଖିରେ ଲାଗି ଯାଇଛି ଯେ । ଏବେ ବୁଝିଲି, ସେହି ଛେପ ଦରିଦ୍ର ପ୍ରାଣର ପ୍ରତିବାଦ ।"



# ରାଶିଫଳ

ରବିବାର । ଭାରତବର୍ଷରୁ ଇଂରେଜ ରାଜତ୍ୱ ହଟିଯାଇ ଥିଲେ ବି ଅଜି କେତେ କଥା ଭଳି ରବିବାରକୁ ଅମେ ସ୍କୁଲ୍ କଲେଜ୍, କଳକାରଖାନା, ଦୋକାନ ବଜାରରେ ଛୁଟି ଦିନ ରୂପେ ପାଳୁଚୁଁ । ଟିକିଏ ଖେଳ କୌତୁକ ଆଳସ୍ୟ ବିଳାସ ଲାଗି ସବୁରି ପ୍ରସ୍ତୁତ ଲୁଟିଚି । ସିନେମା ଘରେ ତିନି ତିନି ତିନୋଟା ଶୋ । କଲିକତାର ଇଂରାଜୀ ଖବର କାଗଜସବୁ ଓଡ଼ିଶାରେ ଦେହ ଫୁଲାଇ ଚିତ୍ରତାରକା-ମାନଙ୍କ ଛବି ସହିତ ସାପ୍ତାହିକ ଆଲୋଚନାରେ କେତେ ବଡ଼ ବଡ଼ କଥା କହି ବିକେଇ ହେଉଛନ୍ତି ଅଜି ।

ସବୁରି କାମ ବନ୍ଦ ହେଲେ ବି ସିନେମା ଓ ଖବର କାଗଜ ଯେମିତି ବଢ଼ି ଯାଉଚି, ଠିକ୍ ସେମିତି ବଢ଼ି ଯାଉଛନ୍ତି କଟକ ସହରର ଭିକାରୀ । ରବିବାରଟା ତାଙ୍କର ଫସଲ ଉଠେଇବା ଦିନ । ଧନୀ ଓ ମଧ୍ୟବିତ୍ତ ଛୁଟିବାଲାଙ୍କ ପାଖରେ ତାଙ୍କର ସାପ୍ତାହିକ ଦାଦନ । କାହାର ଦେହରେ ଖଣ୍ଡେ ସଫା ଲୁଗା ଜମା ନାହିଁ । କାହା ହାତରେ ଗୋଟାଏ ଝୁଲା, ଝୁଲାଇ ବସିବାକୁ; ଯେଉଁ ଝୁଲ ଥାଇ

କେତେ ସୁନ୍ଦର ସଙ୍କେତ ରୂପରେ ତ୍ୟାଗୀ ସନ୍ନ୍ୟାସୀଙ୍କ କାନ୍ଧରେ ଝୁଲି ଦାର୍ଶନିକର ସମ୍ଭ୍ରମ ଜାତ କରାଏ ।

ଉଦ୍ଭଟତାକୁ ଭ୍ରୂକ୍ଷେପ ନ କରି ସମାଜର ଉପେକ୍ଷିତ ଏହି ଜୀବ ଗୁଡ଼ିକ ନେମିତ ନିଶ୍ଚିନ୍ତ ଓ ସ୍ୱଚ୍ଛନ୍ଦ ମନରେ ହାତରେ ଖଣ୍ଡେ ଲେଖାଁ ଟିଣପାନ ଧରି ଗୁଳିଚକ୍ର ବନ୍ଧୁକଧାରୀ ସୈନ୍ୟ ଭଳି । ଏଇ ଅତି ସାଧାରଣ ଓ ଅତି ପୁରୁଣା ଦୃଶ୍ୟରୁ ଦୃଷ୍ଟି ଫେରାଇ ମୁଁ ଖଣ୍ଡେ ଇଂରାଜୀ କାଗଜର ପ୍ରକାଣ୍ଡ ପୃଷ୍ଠା ଭିତରେ ମୁହଁ ଲୁଚାଇ ଥାଏଁ । ମୁହଁ ଲୁଚାଇବାର ଏମିତି ଯୋଗଡ଼ଣୀ ଆଉ ତ ପୃଥିବୀରେ ନାହିଁ ପରା !

ନଜର ପଡ଼ିଲା, ସାପ୍ତାହିକ ରାଶିଫଳ ଉପରେ । ଆଜି କାଲି ପତ୍ର-ପତ୍ରିକାମାନଙ୍କରେ ଏମିତି ସାପ୍ତାହିକ ପୁଣି ମାସିକ ରାଶିଫଳମାନ ନିୟମିତ ବାହାରୁଥିବାରୁ ମୁଁ ନିଜ ରାଶିଟାକୁ ମନେ ରଖି ସାରିଲଣି । ମଣିଷର ଭବିଷ୍ୟତ ଏବେ ଆଗଠାରୁ ବୋଧହୁଏ ବେଶୀ ଅନ୍ଧାର, ବେଶୀ ଅସ୍ଥିର, ଅନିର୍ଦ୍ଦିଷ୍ଟ ଓ ଅଜ୍ଞେୟ ହୋଇ ପଡ଼ୁଛି । ଅଜ୍ଞର ଧଡ଼ିକ୍କୁ ତା'ର ଆକାଂକ୍ଷା, ଅସୀମ ଆକାଂକ୍ଷା । ଏହି ରାଶିଫଳ ବାଟରେ ସେ ଅବା ଜୀବନର ସବୁ ରହସ୍ୟ ଉଦ୍‌ଘାଟନ କରିବାକୁ ଲୋଡ଼େ ।

ସେଥିପାଇଁ ଖବର କାଗଜମାନେ ଯୁଦ୍ଧ ବିଗ୍ରହ, ରାଷ୍ଟ୍ର ଗଠନ ଓ ରାଷ୍ଟ୍ର ପତନ ଆଦି ବ୍ୟାପାରରେ, ପୁଣି ବ୍ୟକ୍ତିବିଶେଷଙ୍କୁ ସାନ ବଡ଼ କରି ଦେଖାଇବାରେ ଦୁନିଆର ସ୍ୱାଚ୍ୟ ନଡାରିଟାକୁ ଖୁବ ଉଡ଼ା ଓଟର କରୁଁ କରୁଁ ଏବେ ରାଶିଚକ୍ର ପ୍ରକାଶ ଦ୍ୱାରା କାହା ପକ୍ଷରେ କେଉଁ ସପ୍ତାହରେ ଉର୍ବୀ ଲମ୍ବା ବାରବାଟୀ ଷ୍ଟାଡିୟମର ଲଟେରୀ କିଣିବା ଶୁଭ ଫଳପ୍ରଦ, ସେ କଥା ପାଠକଗୋଷ୍ଠୀକୁ ଜଣାଇ ଦିଅନ୍ତି । କିନ୍ତୁ ଏଇ ଉକାରୀ ଦଳ ? ତାଙ୍କର କେଉଁ ସପ୍ତାହରେ ରାଶିଫଳ କଣ ହୁଏ, ତାହାର ଥଳୀ ପୁରା ପଡ଼େ, କେଉଁ ମାସ କେଉଁ ବର୍ଷ କାହାର ଭାଗ୍ୟ ଦେବତା କିଭଳି ପ୍ରସନ୍ନ ହୁଅନ୍ତି

ଦେଲାଣି, ଏସବୁ ଅନର୍ଥକ ଚିନ୍ତାରୁ ନିଜକୁ ଟାଣିଆଣି ଚନ୍ଦ୍ରଗୁପ୍ତଙ୍କ ଦରବାରରେ ଏ ସପ୍ତାହଟାରେ ମୁଁ ମୋର ଅସ୍ତ୍ର ବ୍ୟସ୍ତ ଭଲ ମନ୍ଦର ତାଲିକା ଭିତରେ ନିମଗ୍ନ; ଖବର ପାଇଲି, କିଏ ଜଣେ ଭଦ୍ରଲୋକ ଖୋଜୁଚନ୍ତି ।

ଭଦ୍ରଲୋକ ! ଅଲୋଡ଼ା ଲେଖକ-ଜୀବନରେ ଅନେକ ଭଦ୍ରଲୋକ ତ ଆଘାତ ଓ ଆଶ୍ୱାସନା ଦେଇଥାନ୍ତି । ପୁଣି କେତେ ଭଦ୍ରଲୋକଙ୍କ ବିବାଦ ମାନ ତାଲକାଗଜ ଖର୍ଚ୍ଚ କରିବାକୁ ହୁଏ, କେତେ ମର୍ଜି ଜଗିବାକୁ ପଡ଼େ । ତଥାପି ଭଦ୍ରଲୋକ ଜଣେ କାହାକୁ ପାଇଲେ ବଡ଼ ଅମୂର୍ଚ୍ଛିକ ଲାଗେ ।

ଅଗନ୍ତୁକଙ୍କୁ ଯାଇ ଦେଖିଲି । ବଡ଼ ସାଧାସିଧା ବୈଚିତ୍ର୍ୟହୀନ ଚେହେରା । ପରିଚୟ ବୁଝିଲି, ସେ ମୋର ଜଣେ ସହଧର୍ମୀ ଲେଖକ, ଲେଖିଛନ୍ତି ଗଳ୍ପ ବହି । ତାହାର ଉପରେ ମୋଠାରୁ ଏକ ମୁଖବନ୍ଧ ଧାଙ୍କର ଲୋଡ଼ା ।

"ଦେଖନ୍ତୁ, ଅନେକ ମୁଖବନ୍ଧ ମୁଁ ଲେଖିଲଣି । ତହିଁରେ କିଛି ଫଳ ହୁଏ ବୋଲି ମୋର ବିଶ୍ୱାସ ନାହିଁ । ସେଥିଲାଗି ଏକାଧିକ ବନ୍ଧୁଙ୍କୁ ବିମୁଖ ଓ ହତାଶ କରିଛି ମଧ୍ୟ ।"

ଅଗନ୍ତୁକ ହତାଶ ଶ୍ରେଣୀରେ ରହିବାକୁ ରାଜି ନୁହଁନ୍ତି । ବିନୀତ ଭାବରେ ସେ ମୋ ହାତକୁ ଖଣ୍ଡେ ପାଣ୍ଡୁଲିପି ବଢ଼ାଇ ଦେଇ କହିଲେ, "ମୁଁ ଜଣେ ନୂଆ ଲେଖକ । ମାନ ଲେଖିଛି ପୁରାପୁରି ପ୍ରାଚୀନ ରୀତିରେ । ଏ ଖଣ୍ଡିକୁ ଛାଡ଼ ତିନି ଚାରି ଖଣ୍ଡେ ପାଣ୍ଡୁଲିପି ଲେଖି ରଖିଛି । ଛପାଇ ନାହିଁ । ଆପଣଙ୍କଠାରୁ ଉତ୍ସାହ ପାଇଲେ ଛପାଇବି ।"

ଉତ୍ସାହ ମୁଁ କାହାକୁ କେବେ ନ ଦିଏ କି ! ଦେଇ ଦେଇ ବୋଧହୁଏ ନିଜ ଭିତରୁ ସବୁତକ ଉତ୍ସାହ ସରିଲାଣି ଯେ, ନିଜ

ପାଇଁ ସୁନ୍ଧା ଖୋଜିଲେ ଅଜ ଅଙ୍ଗ ସହଜରେ ମିଳୁଛ । ପାଣ୍ଡୁଲିପି ଖାତାଟି ଥର ପତ୍ରଗୁଡ଼ିକୁ ଓଲଟାଇବାବେଳେ ଲାଗିଲା । କେତୋଟି କ୍ଷୁଦ୍ର ଗଳ୍ପର ସମଷ୍ଟି । ଗୋଟିଏ ଗଳ୍ପର ପ୍ରଥମ ଧାଡ଼ିରୁ ଐତିହାସିକ ଗଳ୍ପ ବୋଲି ମନେ ହେଲା । ଆଜିର ପ୍ରଗତି ଯୁଗରେ ଏଭଳି ଗଳ୍ପ ତ ସଚରାଚର ନଜରରେ ପଡ଼େ ନାହିଁ । ପଢ଼ିଲି, "ନାନା ବାଦ୍ୟରେ ଚର୍ଚ୍ଚିତ ନବରତ୍ନ ଓ ବନ୍ଧୁ ପାତ୍ର ମନ୍ତ୍ରୀ ସଜ୍ଜିତ ଅଦର୍ଶ ରାଜା ବିକ୍ରମାଦିତ୍ୟ ରାଜ୍ୟର କୁଶଳ ଅଲୋଚନା କରୁଥାନ୍ତି । ନଗର ଦ୍ୱାରରେ ଏକ ଗଣ୍ଡଗୋଳ ଶୁଣାଗଲା ।

ରାଜାଦେଶରେ ପ୍ରହରୀ ଆସି ଜଣାଇଲା, "ମହାରାଜ ! ଦକ୍ଷିଣର କରଦ ରାଜ୍ୟ ମାଳବର ଅନେକ ଲୋକ ସମ୍ମୁଖରେ ଦୁଃଖ ଜଣାଇବାକୁ ଆସିଛନ୍ତି ।"

ପରମ କାରୁଣିକ ବିକ୍ରମ ସମସ୍ତଙ୍କୁ ଡାକିବା ପାଇଁ ଅନୁମତି ଦେବାକୁ ରାଜପରିଷଦ ଲୋକାରଣ୍ୟ ହୋଇ ପଡ଼ିଲା । ସେମାନଙ୍କ ମଧ୍ୟରୁ ଜଣେ କହିଲେ, "ମହାରାଜ ! ଆମେ ସମସ୍ତେ ଆଶ୍ରୟ ପ୍ରାର୍ଥୀ । ହାଣମୁହାଁରୁ ବର୍ତ୍ତିବା ପାଇଁ ରାଜ୍ୟ ଛାଡ଼ି ପଳାଇ ଆସିଛୁ । ଏହି ଶତାଧିକ ଲୋକଙ୍କ ମଧ୍ୟରୁ ଜଣେ ପୁଞ୍ଜା ପୂର୍ଣ୍ଣାଙ୍ଗ ନୁହେଁ । କାରଣ ମାଳବରେ ଯାହାର ଅଙ୍ଗହାନି ନ ଘଟିଛି, ବୁଝିବାକୁ ହେବ, ସେ ଆଉ ଜୀବିତାବସ୍ଥାରେ ନାହିଁ । ଦେଖନ୍ତୁ, ଆମ୍ଭମାନଙ୍କର ହସ୍ତପଦ ନାସାକର୍ଣ୍ଣ ଖଣ୍ଡିତ । ଜୀବିତାବସ୍ଥାରୁ ବିଦାୟ ନେବାର ଏହା ପ୍ରଥମ ସୂଚନା ।"

ବର୍ଣ୍ଣନା ଶୁଣି ସଭାସଦ୍‌ମାନଙ୍କର ଭୟ ଓ ଦୁଃଖରେ ଲୋମ-ହର୍ଷଣ ଜାତ ହେଲା । କଳ୍ପନାତୀତ ଅମାନୁଷିକ ଅତ୍ୟାଚାରର ଦୃଶ୍ୟ ଦେଖି ବିକ୍ରମାଦିତ୍ୟ ନିଜ ଚକ୍ଷୁକୁ ବିଶ୍ୱାସ କରି ପାରିଲେ ନାହିଁ ।

ରାଜାଙ୍କ ସନ୍ଦେହ ମୋଚନ ଲାଗି ବତିଶସିଂହାସନର ପିତୁଳାମାନେ କହିବାକୁ ଆରମ୍ଭ କଲେ । ଗୋଟିଏ ପିତୁଳା କହିଲା—

"ଅନେକ ବର୍ଷ ପୂର୍ବେ ମହାରାଜଙ୍କର ଜଣେ ଅତିପ୍ରିୟ ଓ ବିଶ୍ୱସ୍ତ ଭୃତ୍ୟ ଥିଲା । ବାଲକ ବୟସରୁ ସେ ପିତୃମାତୃହୀନ ଅସହାୟ ଅବସ୍ଥାରେ ରାଜଦ୍ୱାରରେ ଆଶ୍ରୟ ନେଇଥିଲା । ଏହି ମାଳବ ରାଜ୍ୟ ତାହାର ଜନ୍ମସ୍ଥାନ । ଅତ୍ୟନ୍ତ ମିଥ୍ୟାବାଦୀ ଥିବାରୁ ତାକୁ ସମସ୍ତେ 'ଭୋଗା' ନାମରେ ଡାକୁଥିଲେ; କିନ୍ତୁ ତାହାର ସେବା ଓ ଆନୁଗତ୍ୟରେ ମୁଗ୍ଧ ହୋଇ ରାଜା ବିକ୍ରମ ଦଣ୍ଡେ ହେଲେ ତାକୁ ପାଖଛଡ଼ା କରନ୍ତି ନାହିଁ ।

ରାଜାଙ୍କର ଆଦର ଓ ବିଶ୍ୱାସ କ୍ରମେ 'ଭୋଗା'ର କ୍ଷମତା ଓ ପ୍ରତିପତ୍ତିରେ ରୂପ ପାଇଲା । ସେହିଭଳି ଅଳ୍ପକ ଲୋକ କ୍ଷମତାଶାଳୀ ହେଲେ ଯାହା ସାଧାରଣତଃ ଘଟିଥାଏ, ତାହାହିଁ ଘଟିଲା—କ୍ଷମତାର ଅପବ୍ୟବହାର ଓ ତାହାର ଦୌରାତ୍ମ୍ୟରେ ଅନ୍ୟ ଭୃତ୍ୟମାନେ ଆତଙ୍କିତ ହେଲେ । ସେ ନିରକ୍ଷର ହେଲେହେଁ ନବରତ୍ନ ମଧ୍ୟ ତାହାକୁ ଖାତିର ସମ୍ମାନ କରିବାକୁ ଲାଗିଲେ, ତାହାର ରାଶିଫଳ ଦେଖି ବରାହମିହିର କହିଲେ, "ସେ ରାଜଲଗ୍ନରେ ଜନ୍ମିଛି ।" ରାଜନୀତିରେ ମୂର୍ଖ ହେଲେ ବି ମନ୍ତ୍ରୀ ଓ ପାରିଷଦବର୍ଗଙ୍କର ସେ ଶ୍ରଦ୍ଧାଭାଜନ ହେଲା । ସାମାନ୍ୟ ରାଜାନୁଗ୍ରହର ସୀମା ତ କିଛି ଅଳ୍ପ ନୁହେଁ ।"

ଆଗ୍ରହୀ ବିକ୍ରମ ପଚାରିଲେ, "ତାହା ପରେ ?"

ଦ୍ୱିତୀୟ ପିତୁଳା କହିଲା, "ଶେଷରେ ତାହାର ପତନର ସମୟ ଆସିଲା । ଘଟଣାକ୍ରମେ ନାନାବିଧ ମନ୍ଦ କାର୍ଯ୍ୟରେ ଲିପ୍ତ ବୋଲି ସେ ଅଭିଯୁକ୍ତ ହେଲା । ତାଙ୍କର କେତେକ ଅପରାଧର ଶାସ୍ତି କେବଳ ପ୍ରାଣଦଣ୍ଡ । କିନ୍ତୁ ବିଶ୍ୱସ୍ତ ଓ ଉପକାରୀ ଭୃତ୍ୟକୁ

ପ୍ରାଣଦଣ୍ଡ ନ ଦେଇ କ୍ଷମାଶୀଳ ବିକ୍ରମ ତାକୁ ରାଜ୍ୟରୁ ବିତାଡ଼ନ କଲେ ।

"ରାଜଦ୍ୱାରରୁ ବହିଷ୍କୃତ ହୋଇ ସେ ପାଇଲା ସବୁରି ଛିଛିକାର ଓ ଅବହେଳା । ଯେଉଁମାନେ ତାହାର ଅନୁଗ୍ରହରେ ଉପକୃତ ହୋଇଥିଲେ କିମ୍ବା ତାହା ସହିତ ବନ୍ଧୁତା କରିବାକୁ ସାର୍ଥକ ମଣୁଥିଲେ, ସେମାନେ ସୁଦ୍ଧା ସେହି ବିପଦବେଳେ ତାହାକୁ ଅଡ଼ ଆଖିରେ ଚାହିଁଲେ ନାହିଁ । ଫଳରେ ସବୁ ମନୁଷ୍ୟଙ୍କ ପ୍ରତି, ଧର୍ମ ଓ ସମାଜ ପ୍ରତି ତାହାର ତୀବ୍ର ବିଦ୍ୱେଷ ଓ ଘୃଣା ଜନ୍ମିଲା । ସେହି ବିଦ୍ୱେଷ, ବିଦ୍ରୂପ ଓ ପରିକଳିତ ମନୋଭାବ ଘେନି ସେ ଉଜ୍ଜୟିନୀ ତ୍ୟାଗକଲା ।

"ଅକଥନୀୟ ପଥକଷ୍ଟ ସହି ସେ ନିଜ ଜନ୍ମସ୍ଥାନ ମାଳବରେ ଯାଇ ପହଞ୍ଚିଲା । ଭାବିଲା, ବରାହମିହିରଙ୍କ ରାଶିଫଳ ଗଣନା କଣ ଠିକ ନୁହେଁ । ସବୁଠାରେ ଆଜି ସେ ପ୍ରତାରିତ, ଉପେକ୍ଷିତ । ତାହା ଗ୍ରାମର ଅନେକ ପୁରାତନ ବନ୍ଧୁ ବିକ୍ରମପୁରୀରେ ତାହାର ଖ୍ୟାତି ଓ ପ୍ରତିପତ୍ତି କଥା ଶୁଣିଥିଲେ । ବହୁବର୍ଷ ପରେ ଆଜି ସେ ଫେରି ଆସିଥିବାରୁ ସେମାନେ ଅହ୍ଲାଦିତ ।

"ତାହାହେଲେ ସେ କିପରି ସ୍ୱଗୃହରେ ପହଞ୍ଚି ପାରିଲା ?" ବିକ୍ରମ ଅଧୈର୍ଯ୍ୟ ହେଲେ । ଉତ୍ତରରେ ପିଙ୍ଗଳା କହିଲା, "ଅସ୍ତମିତ ଭାଗ୍ୟ-ରବି ପୁନର୍ବାର ଉଦିତ ହେଲେ । ସେତେବେଳେ ମାଳବ ରାଜାଙ୍କର ଅତ୍ୟାଚାର ଓ ଉତ୍ପୀଡ଼ନରେ ପ୍ରଜାପୁଞ୍ଜ ଅତିଷ୍ଠ ହୋଇ ପଡ଼ିଥିଲେ । ରାଜାଙ୍କ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ର ଚାଲିଥାଏ । ଗୋପା ପକ୍ଷରେ ଏହାହିଁ ହେଲା ସୁବର୍ଣ୍ଣ ସୁଯୋଗ । ନିଜର କେତେକ ବାଲ୍ୟବନ୍ଧୁଙ୍କ ସଙ୍ଗେ ସେ ଷଡ଼ଯନ୍ତ୍ରରେ ଯୋଗ ଦେଇ ମାଳବ ରାଜାଙ୍କୁ ହତ୍ୟା କଲା ଏବଂ 'ଭୂପେନ୍ଦ୍ର' ନାମରେ ଅଭିହିତ ହୋଇ ସିଂହାସନରେ ଆରୂଢ଼ ହେଲା ।

ସିଂହାସନରେ ବସି ଭୂପେନ୍ଦ୍ରଙ୍କର ପ୍ରଥମ କର୍ତ୍ତବ୍ୟ ହେଲା, ସିଂହାସନ ପାଇବା ପାଇଁ ତାଙ୍କୁ ସାହାଯ୍ୟ କରିଥିବା ଷଡ଼ଯନ୍ତ୍ରକାରୀ ବାନ୍ଧବବନ୍ଧୁମାନଙ୍କୁ ହତ୍ୟା କିମ୍ବା ବନ୍ଦୀ କରିବା । କାରଣ ସେହି-ମାନେହିଁ ତାଙ୍କ କାର୍ଯ୍ୟକଳାପର ବହୁ ରହସ୍ୟ ଅବଗତ ଥିଲେ । ସେମାନଙ୍କୁ ସ୍ୱାଧୀନ ଅବସ୍ଥାରେ ରଖିଲେ ସେ ସକଳ ରହସ୍ୟ ପ୍ରକାଶ ପାଇଯିବାର ଆଶଙ୍କା । ସେଥି ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ଅଭିନବ ଶାସନ ପ୍ରତିଷ୍ଠା କରିବା ସକାଶେ ପ୍ରାଚୀନ ରାଜପରିବାରର ବାଳବୃଦ୍ଧ-ବନିତା ନିର୍ବିଶେଷରେ ସମସ୍ତଙ୍କୁ ସେ ନିର୍ମୂଳ କଲେ ।

ନିଜ ହସ୍ତରେ କାହାରିକୁ ହତ୍ୟା କରିବାର ବୀରତ୍ୱ ଓ ସାହସ ତାଙ୍କର ନ ଥିଲେ ବି ଅପର ହସ୍ତରେ ମାରିବା କୌଶଳ ତାଙ୍କୁ ଜଣା ଥିଲା । ଏହି ଉପାୟରେ ନିଜ ରାଜ୍ୟକୁ ଲାଗିଥିବା ଆଉ କେତେ ଖଣ୍ଡ ରାଜ୍ୟ ବି ସେ ଜୟ କଲେ । ସେ ସବୁ ରାଜ୍ୟର ରାଜାମାନଙ୍କୁ ବନ୍ଦୀ କରି ଆଣି ନିଜର ଅନୁଗତ କଲେ । ପୁଣି ରାଜ୍ୟଗୁଡ଼ିକ ଦଖଲ କରିବାକୁ ବାହାରି ସେ କେତେ ଗଛ ଓ କେତେ ସ୍ତ୍ରୀ ପୁରୁଷଙ୍କୁ ହାଣି ପକାଇ କେତେ ଘରେ ଯେ ନିଆଁ ଲଗାଇ ଦେଲେ, ଆଉ କେତେ ଯେ ଧନ ସମ୍ପତ୍ତି ଲୁଟିକରି ଆଣିଲେ ସେ ସବୁର କଳନା ନାହିଁ ।

ବିକ୍ରମାଦିତ୍ୟ ଅଧୀର ହୋଇ କହିଲେ, "ଏହା ଯେ ପୁରାପୁରି ଡକାୟତି ।"

ଚତୁର୍ଥ ପିତୁଳା କହିଲା, "ଡକାୟତି ନୁହେଁ ମହାରାଜ ! ଏହା ହେଉଛି ଐତିହାସିକ ରାଜନୀତି । ଏହି ରାଜନୀତି ବଳରେ ଭୂପେନ୍ଦ୍ର ଯେତେ ଅର୍ଥ ଲୁଟିକରି ଆଣିଲେ, ତାହା ତାଙ୍କ ନିଜ ଆବଶ୍ୟକ ଧନ ଅପେକ୍ଷା ବଳକା ହୋଇପଡ଼ିବାରୁ ସାହାଯ୍ୟକାରୀମାନଙ୍କୁ ଅକାତରେ ହାତରେ ବାଣ୍ଟି ଦେଲେ । ତହିଁରେ ସେମାନେ ଖୁବ ମୋଟା ଓ

ବନ୍ଦୀ ହୋଇ ରାଜାଙ୍କ ବନ୍ଦନାଭୋଗ ହେବାକୁ ତତ୍ପର ହେଲେ । ଯେଉଁମାନେ କିଛି ହେଲେ ଦାନ ପାଇଲେ ନାହିଁ, ସେମାନେ ଭବିଷ୍ୟତରେ ପାଇବାକୁ ଆଶାରଖି ତାଙ୍କୁ 'ମହାଦାନୀ' ନାମରେ ଡାକିଲେ । ଯାହାଙ୍କର ଘରଦ୍ୱାର ପୋଡ଼ା ଯାଇ ନ ଥିଲା କିମ୍ବା ଯେଉଁମାନେ ଅକସ୍ମାତ୍ ନିଖୁଣ ହୋଇ ବଞ୍ଚି ରହିଲେ ସେମାନେ ତାହାକୁ ରାଜାଙ୍କର ପରମ ଦୟା ଓ ଅନୁଗ୍ରହ ବିଚାରି କୃତକୃତ୍ୟ ହେଲେ ।

ବନ୍ଦମାଦତ୍ୟ କହି ଉଠିଲେ, 'ତେବେ ସେ ରାଜ୍ୟର ସମସ୍ତ ପ୍ରଜା ଭୀରୁ, କାପୁରୁଷ ଓ ମୂର୍ଖ ।'

ପଞ୍ଚମ ପିତୁଳା ଉତ୍ତର ଦେଲା, 'କିନ୍ତୁ ସେମାନଙ୍କର ସହନ ଶକ୍ତି ଅସୀମ । ଭୟରୁ ହେଉ, ବାଧ୍ୟତା ହେତୁରୁ ହେଉ, ନିଜର ସକଳ ଶକ୍ତି ସେମାନେ ରାଜାଙ୍କୁ ଅର୍ପଣ କରି ରାଜଶକ୍ତିକୁ ବଢ଼ାଇଛନ୍ତି । ତେଣୁ ସେ ରାଜା କିଛି ନ କରି ମଧ୍ୟ ମହାବୀର, କିଛି ନ ଦେଇ ମହାଦାନୀ ଓ କିଛି ନ ଜାଣି ଶ୍ରେଷ୍ଠ ଜ୍ଞାନୀ ଆଖ୍ୟା ପାଇଛନ୍ତି, ଏହା ତ ସାମାନ୍ୟ ସୌଭାଗ୍ୟର ବିଷୟ ନୁହେ ।

"ରାଜ୍ୟର ସବୁ ଧନୀ ଓ ଶକ୍ତିଶାଳୀ ଲୋକଙ୍କୁ ନିପାତ କରିବା ଫଳରେ ଭିକାରିମାନଙ୍କ ସଂଖ୍ୟା ବହୁଗୁଣରେ ବୃଦ୍ଧିପାଇ ରାଜ୍ୟତମାମ କେବଳ ଭିକାରି ଓ ମାଗନ୍ତା ଛଡ଼ା ଆଉ କାହାରି ସ୍ଥାନ ନାହିଁ । ଯେଉଁ କେତେ ଜଣ ଧନୀ ଅଛନ୍ତି, ସମସ୍ତେ ରାଜଦ୍ୱାରରେ ବଡ଼ ବଡ଼ ଭିକାରି । ଦେଶର କବି ପଣ୍ଡିତମାନଙ୍କ ଶକ୍ତି ହରଣ କରି ତାଙ୍କୁ ଏତେ ଦୂର ମୂର୍ଖ କରି ଦିଆଯାଇଛି ଯେ, ସେମାନେ ରାଜ ପ୍ରଶସ୍ତି ବ୍ୟତୀତ ଆଉ କିଛି ବିଦ୍ୟା ଜାଣନ୍ତି ନାହିଁ । ଯଦି କିଛି କାବ୍ୟ, ନାଟକ ରଚିତ ହୁଏ, ସେସବୁ ରାଜାଙ୍କ ନାମରେ ଭଣିତ । ସମସ୍ତ ପ୍ରଜା ଏହି ଆଦର୍ଶ ଅନୁସରଣ କରିବା ଲାଗି

ରାଜ୍ୟର ସବୁଠାରୁ ବଡ଼ ମିଛୁଆ, ବଡ଼ ଲାଞ୍ଚୁଆ, ଦଗାବାଜ ଓ ଖୁସାମତିଆମାନେ ପୁରସ୍କୃତ ହୋଇ ଉତ୍ସାହ ପାଉଥାନ୍ତି ।”

“ଅସହ୍ୟ ! ଅସହ୍ୟ !” ବିକ୍ରମାଦିତ୍ୟ ଚିତ୍କାର କଲେ ।

ଷଷ୍ଠ ପିତୁଳା କହିଲା, “ଧୈର୍ଯ୍ୟଶୀଳ ବିକ୍ରମଙ୍କ ଠାରେ ଏରୂପ ସଂଯମହୀନତା ଅଶୋଭନୀୟ । ରାଜନୀତିର ସାମ-ଦାନ-ଦଣ୍ଡ-ଭେଦ, ସକଳ କ୍ଷେତ୍ରରେ ସେ ରାଜା ଅତ୍ୟନ୍ତ ବିଶାରଦ । ଲାଞ୍ଚ ମିଛ ହତ୍ୟା ଆଦି ପାପର କ୍ଷାଳନ ଲାଗି ପୁଣି ରୁଗ୍‌ଣ, ଦୁର୍ବଳ ଓ ନିରାହ ଲୋକଙ୍କର ପରିବାରକୁ ସାନ୍ତ୍ୱନା ଦେବାପାଇଁ ସେ ଗ୍ରାମେ ଗ୍ରାମେ ମନ୍ଦିରମାନ ତୋଳାଇଛନ୍ତି । ଗ୍ରାମେ ଗ୍ରାମେ ପ୍ରତି ବ୍ୟକ୍ତିଙ୍କ ରାଶିଫଳ ଜଣାଇବା ପାଇଁ ମଧ୍ୟ ଗଣକ ନିଯୁକ୍ତ ହୋଇଛନ୍ତି । ଗ୍ରହ ଶାନ୍ତିପାଇଁ ଯଜ୍ଞାନୁଷ୍ଠାନ ମଧ୍ୟ କରାଯାଇଥାଏ । ତେଣୁ ରାଜାଙ୍କ ଉପରେ କିମ୍ବା ନିଜ ଉପରେ କାହାରିକ ଦୋଷାରୋପ କରିବାକୁ ହୁଏ ନାହିଁ, କେବଳ ରାଶିଫଳ ଉପରେ ।”

ସମସ୍ତ ବୃତ୍ତାନ୍ତ ଶୁଣି ବିକ୍ରମାଦିତ୍ୟ କହିଲେ, “ଏ ଲୋକକୁ କୌଣସି ଦଣ୍ଡ ଦେବା ଅର୍ଥ ଦଣ୍ଡବିଧିର ଅବମାନନା କରିବା । ତେବେ ଏହାର ପ୍ରତିକାର କଣ ?”

ପାରିଷଦବର୍ଗ ନୀରବ ହେଲେ । କିନ୍ତୁ କବି କାଳିଦାସ ଜଣାଇଲେ, “ବିକ୍ରମଙ୍କ ପୁଣି ପ୍ରତିକାର କରାଇବାର ସାମର୍ଥ୍ୟ ଅଛି କାହାର ?” ଉତ୍ତରରେ ରାଜା ସ୍ମିତହାସ୍ୟ କଲେ । ସେ ହାସ୍ୟର ଅର୍ଥ ବୁଝିବାରେ ମନ୍ତ୍ରୀ ସର୍ବଦା ଅଭ୍ୟସ୍ତ । ତା'ହା ଫଳରେ ଭୂପେନ୍ଦ୍ରଙ୍କର ପଦୋନ୍ନତି ଘଟିଲା । ବିକ୍ରମଙ୍କ ରାଜସଭାକୁ ସେ ମହାସମାରୋହରେ ଆନୀତ ହେଲେ । ତାଙ୍କୁ ଆଉ କୌଣସି କାର୍ଯ୍ୟରେ ହସ୍ତକ୍ଷେପ ନ କରି କେବଳ ଏଣିକି ଇଚ୍ଛାନୁଯାୟୀ ସର୍ବଦା ଭାଷଣ

ଦେବାକୁ ଅନୁମତି ମିଳିଲା । ମାତ୍ର ସେ ଭାଷଣକୁ କେହି ହେଲେ ନ ଶୁଣିବା ପାଇଁ ସର୍ବବାଧ ବ୍ୟବସ୍ଥା କରାଗଲା ।”

× × × ×

ଗଳ୍ପଟି ପଢ଼ିସାରି ଲେଖକଙ୍କୁ କହିଲି, “ଏହା ଉପରେ ମୁଖବନ୍ଧ ଲେଖିବାକୁ ଗଲେ ଆଗ ନିଜର ମୁଖବନ୍ଦ କରିବା ଉଚିତ ।”

ସେ ବିଷଣ୍ଣ ହୋଇ ପଚାରିଲେ, “କାହିଁକି ?”

“କାରଣ ଏହା ଯେ ସ୍ୱୟଂ ଏକ ମୁଖବନ୍ଧ ।”

“ତେବେ ଦୟା କରି ଏ ଗଳ୍ପର ନାମକରଣ କରି ଦିଅନ୍ତୁ ।”—ଲେଖକ ପୁଣି ଅନୁନୟ କଲେ ।

“ଦେଖନ୍ତୁ, ଆପଣ ଯଦି ବଙ୍କିମଙ୍କ ଭଳି ସ୍ମିତହାସ୍ୟ ନ କରନ୍ତି, ତେବେ ଗୋଟାଏ ନାମକରଣ ଅନ୍ତତଃ କରି ପାରେ । ଗଳ୍ପଟିର ନାମ “ରାଶିଫଳ” ରଖିବେ କି ?



# ଅସରନ୍ତ

ଖରାଏ ଖରାଏ ଲାଗିଥାଏ ପିଲାଙ୍କ ଖେଳ, ଖରା ବରଷା କିଛି ମାନେ ନାହିଁ ନଗଣ୍ୟ ପ୍ରାଣୀ—ମଣିଷ ଛୁଆ ବୋଲି ଯାହାଙ୍କୁ କେହି କେବେ ଖାତିର କରେ ନାହିଁ । ଏଇମାନଙ୍କ ପିଲା ଖେଳ ଭିତରେ ବିଚାର ହୁଏ ପୃଥିବୀର ବଡ଼ ବଡ଼ ସମସ୍ୟାର । ବଡ଼ ମଣିଷଠୁ ଏମାନେ ବା କେଉଁ ଗୁଣରେ ଊଣା ? ଖାଲି ବଡ଼ ମଣିଷର କାଠୁଆ ବନ୍ଧାଗତ ପରିବର୍ତ୍ତେ ଏମାନଙ୍କର ନହକା ଧୂଳିଖେଳ, ଏତିକି ସିନା ।

ଘରେ ବୋଉ ଅଁଟର ଗୃହିଁ ରହିଥାଏ; କାହିଁ, କୁଆଡ଼େ ଗଲା ପିଲାଟା ? "ହଇହୋ ପିଟେଇ, ବନ୍ଟୁକୁ ଦେଖିଥିଲ କି ?" "ଗଲ ଗଲ ନାମେଇ, ସୁନାଟି ପରା, କୋଉଠି ବୁଲୁଥିବ ସେ ଚନ୍ଦୁର ସାଙ୍ଗେ, ଗଲ ଗଲ ଏଣେ ଭାତ ଦଟା ଚଣା ଗୁଡ଼ିଲ ହେଲଣି ଅସି ।" ତେଣୁ ବନ୍ଟୁ ଫେରିଆସେ ଗୋଡ଼ ଦୁଲଦାଲ—କରୁଣ । ହାତର ବଙ୍କା ବାଉଁଶକଣି ଖଣ୍ଡିକ କଥା କୁହାଏ, ଘର ଖାନ୍ଟୁଲୁ, ଦୁଆରର ଲେଟା କଂସାକୁ, ଔଳ ତଳର ଛଡ଼ ଛଡ଼କା ଅଲସୁଆ କୁକୁରଟାକୁ,

ଟେଁ—ଭେଁ—କେଁ × × × ହୋଇ ବନୁ ଅସିଲା । "ବୋଉ ଅମେ ଭାରି ବଡ଼ଲୋକ ହବା ।"

"ଶୁଣୁଚ ଶୁଣୁଚ, ଯ୍ୟା କଥାକୁ; ଖରାରେ ବୁଲି ବୁଲି ହାଲ ଫିଟି ହୋଇଗଲାଣି—ଧୂଅ ପୋଡ଼ି ଯାଉଚ, ଧୂଅ ପୋଡ଼ି ଯାଉଚ, ମୁଣ୍ଡ ଫାଟିଗଲାଣି ।"

ବନୁ ଚରକ ଚଢ଼େଇପରି ଦି' ଗୁହଅର ଏପାଖ ସେପାଖ ବୁଲିଅସେ । ମୁଣ୍ଡଟା ମୁହୂର୍ତ୍ତେ ନଇଁପଡ଼େ ବୋଉଙ୍କ ଗୁରୁ ଚାନ୍ଦାରେ । ତା ପରେ ପାଟିକରି କହେ, 'ବୋଉ ଅମେଁ ଭାରି ବଡ଼ଲୋକ ହବା ।'

ତା ପରେ ବୋଉ କୋଳରେ ଦି' ହାତରେ ଝୁଲିପଡ଼ି କହେ, "ବୋଉ, ମୋ ଜାମା କେବେ ଅସିବ ?"

ବୋଉ କହେ, "ଦଶହରାକୁ ବାପା ଅଣିବେ ।"

ବନୁ କହେ, "ଦଶହରା ଅଉ କେତେ ଦିନ ଅଛି ?"

ବୋଉ କହେ—ବନ୍ତ ଫଟେଇ ଫଟେଇ ପଗୁରେ ।

ତାର ଦିନ, ରାତି, ସବୁ ଝୁଲିପିଉଚେ ପାଇବା ମୋହରେ । ଗଛ, ଧାନ କଅଁସା, ସଞ୍ଜର ଖେଳ, ସବୁଥିରେ ଦେଖେ ସେ ନୂଆ ଲୁଗା, ନୂଆ ଜାମା, ଚକ୍ ଚକ୍ ଜାମା, ରଙ୍ଗେଇ ଜାମା, ପାଇବାର ମୋହକୁ ସେ ବେଶି ବୁଝେ ନାହିଁ, ଯେତେ ବୁଝେ ଅଣ୍ଟୁକୁ ।

ଅଉ ପୂଜାକୁ ଅସିବେ ବାପା । ବାପା ପାଇଁ ସେ ସେତେ ବ୍ୟସ୍ତ ହବ ନାହିଁ, ଯେତେ ହବ ଉତ୍ସବ ପାଇଁ । ବରଷକେ ଏଇ ଦି' ଗୁହଅର ଦେଖା; କିନ୍ତୁ ତାର କେତେ ସପନର ମଉଡ଼ ମଣିଛି ସେଇ ବାପଠି । ବାପା ଗୁକିରି କରେ, ଢୂର୍ ଦୂରରେ, ଭାରି ବଡ଼ ଗୁକିରି ନିଶ୍ଚୟ, କାରଣ ବନ୍ତୁ ଅଖିରେ ତାର ଜାଜର ଯାହା କିଛି ସବୁ ବଡ଼ । ତା ପରେ ବାପାର କେତେ ସୁନ୍ଦର ଧଳାପୋଷାକ,

ଅଣ୍ଟାରେ ନାଲିପଟି, ଗୁଡ଼ରେ ପଲଟାଭଳି ଚକଡ଼ା ହୋଇ ଗୋଟାଏ କେଡ଼େ ସୁନ୍ଦର ନାଲିପଟି ଯାହା ମଝିରେ ପିତଳର ଗୋଟାଏ ମୋଟା ଚକତି । କିନ୍ତୁ ବାପା ସେ ସବୁ ପଦାକୁ କାଢ଼େ ନାହିଁ କାହିଁକି ? ତାର ବାପ ଦେଖେଇ ହୁଏ ନାହିଁ ଜଗୁର ଭାଇପରି ।

କନୁ ଚନ୍ଦୁର କାନେ କାନେ କହେ, "ଏଥର ମୋର ଭଲ ସୁନ୍ଦର ଜିନିଷ ସବୁ ଆସିବ । ଆମେ ଜମା ମିଶିବା ନାହିଁ ଜଗୁ ସାଙ୍ଗରେ ।"

ଦିନ ଗଡ଼ିଯାଏ ।

କାହିଁ କେଉଁ ଦୂର ଦେଶରୁ ବାପର ଚପରାସିଟି ଚୁହିଁ ରହିଥାଏ ଓଡ଼ିଶା ମଫସଲର ତାର ଛୋଟିଆ ଘରଟିକୁ । ଦଶ ପାଇଟି ଶେଷ କରି ହାତରେ ମୁଠିଏ ଫୁଟେଇ ଖାଇ ଯେତେବେଳେ ସେ ଗଡ଼ିତ ପଡ଼ିତ ହୁଏ ସେତେବେଳେ ସେ ଦେଖେ, ତାର ଗରିବ ଘର ଖଣ୍ଡିକ; ତାର ଭାରିଜାଟି—ଯେ ଚୁହିଁ ରହୁଛି ବେଳ କାଳକେ ଲେଖା ଖଣ୍ଡିଏ, ପୋଷ୍ଟକାର୍ଡ଼କୁ; ଅଉ ମାସ ଶେଷରେ ଟଙ୍କା ପାଞ୍ଚଟାକୁ । ଅଉ ଦେଖେ ତାର ଛୋଟିଆ ବନ୍ଧୁଟିକୁ; ଯେ ବଢ଼ି ଉଠୁଛି ଖୁଦ ପାଣିରେ, ମଫସଲର ମେଲା ଖୋଲା ଅରମା ଗଛ ନଟା ପରି ।

ବାବୁ କ'ଣ ଛୁଟି ଦେବେ ?

ଶରତର ମନ ମତାଣି ସ୍ନିଗ୍ଧତା ଘେନି ଯେତେବେଳେ ଦୁର୍ଗାପୂଜା ଆସି ପହଞ୍ଚିଲା ସେତେବେଳେ ଚାରିଆଡ଼େ ଖେଳିଗଲା କଣ ଗୋଟାଏ ନୂଆ ପାଇବାର ତେଜ । ଏଇ ଆସିଲା ଶରତ ଦୁର୍ଗାପୂଜା, କୁଆଁର ପୁନେଇଁ ପୁଣି ଦିଆଲି, ଗରିବ ଲୋକର ଧୂସର ବରଷ କାଟିବା ଭିତରେ ମନ୍ଦା ମନ୍ଦା ଶାଉଁଳିଆ ସ୍ୱପ୍ନ ପରି । ଗାଁରେ ଦପ୍ତର ବସିବ, ପାଖ ଗାଁରେ ଗଢ଼ା ହୋଇଛି ଦୁର୍ଗା ପ୍ରତିମା । ବାଡ଼ି ଖେଳ, ଖଣ୍ଡା ଖେଳ, ଘୋ ଘା, ଆନନ୍ଦର ଚହଳ । ପୂଜାଦିନ

ମାଡ଼ ଅସିଲା । ଜଗୁର ଜ୍ୱର ଅସିଛୁ । ଜଗୁ କେତେ କଥା ଦେଖେଇ ସାରିଲଣି ସାଙ୍ଗ ପିଲାଙ୍କୁ । ବର୍ତ୍ତମାନ ଜଗୁର ଦଳ ବଢ଼ିଲଣି, ଯେଉଁଅଡ଼େ ଯାଉଛୁ ପଛେ ପଛେ କେତେ ପିଲା ଗୋଲଛନ୍ତି । "ହେ ଜଗୁ ଜଗୁ, ଦେଲୁ ତୋ କଲ କୁକୁରଟାକୁ, ଟିକିଏ ଚପିବା ।" ପଛେ ପଛେ ଭାରି ଲୋକ, କାରଣ ଜଗୁର କେତେ ନୂଆ ଜିନିଷ— ପୁଣି ଜଗୁର ଜ୍ୱର ଅସିଛୁ । ସମସ୍ତେ ଗୋଡ଼ାନ୍ତି—ଖାଲି ବନୁକୁ ଛାଡ଼ି । ବନୁ ଖାଲି ବଢ଼ାଇ କରୁଛୁ ତାର କେତେ ଜିନିଷ ଅସିବ ।

"ବୋଉ, କାହିଁ ମୋର ନୂଆ ଜାମା ?"

ବେଳ ରତ ରତ ହେଲାବେଳକୁ ଦାଢ଼ିଆ ଡାକବାଲା ଖଣ୍ଡିଏ ଚିଠି ଦେଇଗଲା । ଅଧ ବାଟରୁ ଗାଁ ମୁଣ୍ଡରୁ ବନୁ ତାର କେତେ କେତେ ଦାଉଡ଼ି ଦାଉଡ଼ି ଅସିଛୁ, କେତେ ପ୍ରଶ୍ନ ପଗ୍ଚାର ପଗ୍ଚାର ।

ବୋଉ ମନେ ମନେ ପଢ଼ିଲା ।

"ବାବୁ ଛାଡ଼ିଲା ନାହିଁ, ପରେ ଯିବ । ଜିନିଷ କିଣି ରଖିଛ, କାହା ହାତରେ ପଠାଇବ ? ପରେ ଯଦି ଛୁଟି ମିଳେ ତେବେ ଜିନିଷ ନେଇ ଯିବ । ବନୁକୁ କୌଣସି ମତେ ବୁଝାଇ ଦେବ ।"

"ବୋଉ ମୋର ଜାମା କେବେ ଅସିବ ? ବାପା କଣ କଣ ଅଣିବେ ?" ବନୁ ଅଜସ୍ର ପ୍ରଶ୍ନ ପଗ୍ଚାରିଗଲା, ବୋଉ ମୁହଁ ଶୁଖେଇ ଦୀର୍ଘ ନିଶ୍ୱାସ ମାରି ବସିଲା । ଖାଲି କହିଲା, "ହଉ ହଉ ।"

ତେବେ ସେ ଅସିଲେ ନାହିଁ, ଯାହା ଟଙ୍କା ପଠେଇଥିଲେ ସବୁ ତ ଦୋକାନୀ କାଲି ବାବଦ ନେଇ ଯାଇଛୁ । ପିଲାଟା ପାଇଁ ଲୁଗା ଖଣ୍ଡେ ବି ହେଇ ପାରିଲା ନାହିଁ ।

ତଥାପି ଶେଷ ଅଶା ଅଛୁ । ଗଦେଇ ସାହୁ ଯଦି କାଲି ଦିଏ । କାଲି ପୁଣି ପୂଜା ।

ସକାଳୁ ଉଠି ବନୁ ସବୁଦ୍ଧନ ଘର ଖେଳିବାକୁ ଗଲା । ଆଜି ପୂଜା । କେତେ ଲୋକଙ୍କ ଘରେ ମଜଲିସ । ତାର କ'ଣ ଯାଏ ସେଥିରେ । ସବୁଦ୍ଧନ ଘର ସବୁ—ଭୁଲି ମନରେ ସେ ହରଷି ହରଷି ଡାକିଲା—

"ଉନ୍ଦୁର—ହେ ଉନ୍ଦୁର ।"

ଖରା ମାଡ଼ ମାଡ଼ ଗଲାଣି, ନୂଆ ନୂଆ ଲୁଗା ପିନ୍ଧି ଗୋଟିଏ ଗୋଟିଏ ଟୁଆ ଗଲେଣି । ନହବତ ବାଜା ମନ ଉଚ୍ଛନ୍ନ କରି ବାଜି ଉଠିଲା । ରଘୁ ବଡ଼ାପା କହିଲେ, "କରେ ବନା, ଏ ଧୂଳିଆଟା ହେଇ ଡେଇଁଥିବୁ ନା—ହେଇ ଦେଖିଲୁ ସମସ୍ତେ କେମିତ—"

ବନୁର ଖିଆଲ ପଶିଲା, "ସତେ ତ, ନୂଆ ଲୁଗା, ନୂଆ ଜାମା ପିନ୍ଧିବାର ବେଳ ତ ହେଲାଣି ।"

ତେଣେ ବୋଉ ବନୁର ଖଣ୍ଡେ ପୁରୁଣା ସଫା ଲୁଗା ବାହାର କରି ଅପେକ୍ଷା କରି ବସିଛନ୍ତି । ହାଲକ ଶୁଖୁଛି, କାଳେ ଟୋକା ନ ବୁଝିବ, ଗଦେଇ ସାହୁ ଅପମାନର କଥା କହୁ ଫେରେଇ ଦେଇଛି—

"ପାଇଲ ଗାଡ଼ିଆ ବୋହୁଥିବେ ? ଅଜି ପୂଜା, ମୋର ଗରାଖଙ୍କୁ ନୁଗା ନାହିଁ, ତହିଁରେ ପୁଣି—"

ଦୁମ୍ ଦୁମ୍ ଧୁସ୍ ଧୁସ୍ରୁ ଅଗରୁ ଅଗରୁ ଜଣା ପଡ଼ିଲା । ହେଇ ବନୁ ଅସିଲା ।

ଏକାନ୍ତକେ ବୋଉ-କାନ୍ଧରେ ଝୁସ୍କନା ଅଜାଡ଼ ହୋଇ ପଡ଼ି ବନୁ କହିଲା, "ବୋଉ ଦେ ମୋ ଲୁଗା ଜାମା ।" ବୋଉ ସଫା ଲୁଗା ଖଣ୍ଡେ ଦେଖାଇ ଦେଇ କହିଲା—"ହେଇ ନେ—ଜାମା ମନକୁ ମାନିଲା ନାହିଁ ବୋଲି ବାପା ଫେରେଇ ଦେଲେ । ପୁଣି ଭଲ ଜାମା ପଠେଇବେ ।"

ଅଉ ପାରେ କିଏ ? ବନୁର ରାଗ, ବାଉଁଅ ଝଗଡ଼ା, ଗାଳି, କାନ୍ଦଣା ସବୁ ଯେମିତି ଛେଚ ଲୁଚି ବରଷି ଗଲା । ବୋଉ ମଝିରେ ମଝିରେ କହୁଥାଏ, "ହଉ ହଉ, ସେମାନଙ୍କର ଥିଲେ ଥାଉ, ଆମର ଆହୁରି ଭଲ ଆସିବ ।" ଯେଉଁ ସ୍ୱପ୍ନ ଭାଙ୍ଗିଛି, ତାକୁ ଆହୁରି ଟାଣି ଓଟାର ଭବିଷ୍ୟତକୁ ମଡ଼େଇଦେଲେ ମନ ମାନେ ନାହିଁ ।

ଅଜ ତାକୁ ବାଧିଲା । ତା'ର ମନର ବଡ଼ଲୋକକୁ ଯେମିତି କିଏ ଜୋର କରି ଝିଙ୍କି ଫୋପାଡ଼ି ଦେଇଛି । ବୋଉ ଯେତେ ବୁଝାଇଲା ବନୁ ବୁଝିଲା ନାହିଁ; କାନ୍ଦି କାନ୍ଦି ଲୋଟିଗଲା ।

ତେମିବୋଉ ଗୁଡ଼ି କୂଅକୁ ପାଣି ପାଇଁ ଯାଉଥିଲେ । କହିଲେ, "ଅହା, ପିଲାଟାକୁ ବୁଝେଇ ଦେଇ ପାରୁ ନାହୁଁ ?" ବନୁବୋଉ କହିଲା, "ଅଗ୍ନା ତମେ ତ ଦେଖୁଛ......"

ତେମିବୋଉ ଆଣି ଦେଲେ ଖଣ୍ଡେ ଠାକୁର କହିଥ । କହିଲେ, "ନେଇ ନେ ତୋର ନୂଆ ଲୁଗା ।" ବନୁ ସବୁ ଗୋଡ଼ରେ ଫୋପାଡ଼ି ଦେଲା, ରାଗରେ ତାଙ୍କ ଠିଲି ପଣତକୁ ଅହୁର ଶରଦେଲା । ବନୁବୋଉ ମୁହଁ କେମିତି କେମିତି କରି ଚାଲିଗଲେ । ବନୁ ନ ଖାଇ ନ ଶୋଇ ପଡ଼ିଲା । ପୂଜା ଦେଖି ଗଲା ନାହିଁ ।

ବୋଉ ଆସି ଦେଖିଗଲା, ବନୁ ନିଦରେ ଶୋଇ ପଡ଼ିଛି ଭୂଇଁ ତଳେ । ସପଟା ଫୋପଡ଼ା ହୋଇଛି ଦୂରରେ ବନୁର ଆଖିପତାକୁ ଶୁଖି ନାହିଁ ଲୁହ ।

ରାତିପରେ ବୋଉ ଚାଲିଗଲା । ଦାଣ୍ଡରେ ପୂଜା ପାଖରେ ନହବତ୍ ବାଜା ବାଜୁଛି ।

× × × ×

ସଞ୍ଜ ନ ହେଉଣୁ ଛୁଣ୍ଡା ଗେଞ୍ଜିଟି ପିନ୍ଧ ବନୁ ଦଉଡ଼ ଦଉଡ଼ ଆସି ପହୁଞ୍ଚିଲା ଗାଁ ଦାଣ୍ଡରେ । ଚାରିଆଡ଼କୁ ବଲ ବଲ କରି ଚାହିଁଲା । ଗାଁ ପିଲାଏ ନୂଆ ପୋଷାକ ପିନ୍ଧି ଆଗକୁ ଚାଲିଛନ୍ତି । ସବା ଆଗରେ ହସି ହସି ଢଳ ଢଳ ଝଲ ଝଲ ଚାଲିଛି ଜଗୁ ।

ବନୁ ଛପି ଛପିକା ଚାଲିଲା । ତାର ମନର ଅନ୍ଧାର ମନରେ ଛପିଲା, ଦୁପାଖର ନାଗଅଁ ବାଡ଼ ତଳର ଅନ୍ଧାର ପରି ।

ସବା ପଛରେ ଛାନି ହଲେଇ ଚାଲିଛି କିଏ, ଚନ୍ଦୁରି ନା ? ଜଗୁ କହୁଛି—'ଭାଇ ଆରଥର ଆସିଲେ ମୋ ପେଇଁ ଆଣିବ ଦନ ଚକିଆ ବାଇସ୍କଲ୍; ଆଉ ଆଣିବ ଅଛୁରି ସୁନ୍ଦର ପୋଷାକ' ।

ବନୁ ଡାକିଲା, "ଚନ୍ଦୁରି, ଚନ୍ଦୁରି !" ପିଲାଏ ପଛକୁ ଚାହିଁଲେ । ଜଗୁ କହିଲା, "ଚାଲ ଚାଲ, ବନା ଡାକୁ ଥାଉ, ଯିଏ ପଛେଇବ ସେ ଲେମନ୍‌ଚୁସ ପାଇବ ନାହିଁ ।"

ସଦା କହିଲା, "ବନାଟା ସେଇ ଛୁଣ୍ଡା କୁର୍ତ୍ତା ପିନ୍ଧିଚି ।"

ମାଧିଆ କହିଲା, "ତାକୁ ଆଜି ଆମ ସାଙ୍ଗରେ ବୁଲେଇବା ନାହିଁରେ ।" ଚନ୍ଦୁରି ଚାଲିଲା ।

ବନୁ ପୁଣି ଡାକିଲା; କହିଲା, "ହଉ ନ ଶୁଣୁ, ହଉ ଯାଅ, ଯାଅ—" ଚନ୍ଦୁରି ଟିକିଏ ଆଗକୁ ପାହୁଣ୍ଡେ ପକେଇ ପଛକୁ ଚାହିଁଲା । ଦେଖିଲା ବନୁ ଚାଲି ଯାଉଛି ପିଠି କରି ।

ଚନ୍ଦୁରି ଦଉଡ଼ ଦଉଡ଼ ଫେରି ଆସିଲା । ଡାକିଲା, "ବନୁ, ବନୁ !" ବନୁ ଶୁଣିଲା ନାହିଁ ।

ଚନ୍ଦୁରି ବହୁତ ଗାକୁଲେଇଲା, ପଛେ ପଛେ ଚାଲିଲା; ବନୁ ଶୁଣିଲା ନାହିଁ ।

ଚନ୍ଦୁର ଟଗଲ୍ଲାକର ବନୁକୁ ଧର ପକେଇ କହ଼ଲା, "କରେ ଅଜ ମୋ ସାଙ୍ଗେ ମିଶବୁ ନାହିଁ ?"

ବନୁ କଛୁ କହ଼ଲ ନାହିଁ, ଝାଣି ଓଝାର ହେଲ । ଚନ୍ଦୁର ଅନ୍ତର କରକ କଭ ଲଗି ଆସିଲ । ବନୁକୁ ଝାଣ କର ଧର କହ଼ଲ, "ମାରବୁଡ ଦାଝା, ମାର ମାର ।"

ବନୁ କଇଁ କଇଁ ହୋଇ କାନ୍ଦ ଉଠିଲା । ଚନ୍ଦୁର କଛୁ ବୁଝି ପାରଲ ନାହିଁ; ଖାଲ ବନକୁ ଅଣ୍ଟିସିଲ, ଅଜ ତାକୁ ତୁନ କରବାକୁ ଚେଷ୍ଟାକଲ ।

ସେତେବେଳକୁ ବାଡ଼ ଉପରର ଘଞନଝାରେ ଖୁନ୍ଦ ହୋଇ ଗଲଣି ଫୁଟିଲ ଜହ୍ନିଫୁଲ ।

ଦେବୀ ପୂଜାର ଅଗମନୀ ଗାଇ ନହବତ ବାଜୁଛି । ବନୁ ଅସ୍ତେ ଅସ୍ତେ ମୁହଁ ଟେକଲ, ଭରସି ଭରସି ହସିବାକୁ ଚେଷ୍ଟା କର କହ଼ଲ, "ବାପା ଅସିଲେ ଅଣିବେ ଯେ ନୂଆ ଜାମା—ନାଇଁ ? କେଉଁର କଣ ଅଛି, ମୋର ଅନ୍ତର ଭଲ ? ଅନ୍ତର ସୁନ୍ଦର—"



# ଟମି

କବି ମୁଁ ମୋଟେ ନୁହେ । ତେବେ ଟମିଟାକୁ ଦେଖିଲେ ମୋ ମନ ଭିତରେ ଅନେକ କଥା ଖେଳି ଯାଏ । ଆହା ବିଚରା ଜୀବ ! ଆଦର, ସ୍ନେହ କାହାକୁ କହନ୍ତି, ସେ ବୋଧହୁଏ ତାର କ୍ଷୁଦ୍ର ଜୀବନରେ ଦିନେ ହେଲେ ଜାଣି ନାହିଁ । ଖାଲି ଦୁଃଖ, କଷ୍ଟ, ଗୋଇଠାମାଡ଼ ଭିତରେ ସେ ଏ ପର୍ଯ୍ୟନ୍ତ ବଢ଼ି ଆସିଛି । ଏହିପରି ବୋଧହୁଏ ତାର କ୍ଷୁଦ୍ର, ଅସମ୍ପୂର୍ଣ୍ଣ ଜୀବନଟି ଦିନେ ଶେଷ ହୋଇଯିବ ।

ଆମ ଘରେ ପିଲାଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଟମିକୁ ଦୂର୍, ଦୂର୍, ମାର୍ ମାର୍ କରନ୍ତି । ଏପରିକି ବୁଢ଼ା ପୁଷାଣିଟାର ମଧ୍ୟ ଟମିକୁ ଦୁଇଓଳି ଅଣ୍ଟୁକରି ପାହାରେ ନ ପିଟିଲେ ମନ ବୋଧ ହୁଏ ନାହିଁ । ଟମିକୁ ଅକାରଣରେ ପିଟିବାଟା ଆମ ଘରର ସମସ୍ତଙ୍କର ଗୋଟାଏ ବଡ଼ ଆମୋଦର ବିଷୟ । ସମସ୍ତେ କିଛି ନା କିଛି ସେଥିରେ ଆନନ୍ଦ ଅନୁଭବ କରନ୍ତି । ସେ ଦିନ—ଯେତେବେଳେ ଟମି ଖାଇବାକୁ ନ ପାଇ ଭୋକ ବିକଳରେ ଆମ ରୋଷେଇ ଘର ଦୁଆର ମୁହଁ ପାଖରେ ଯାଇ ପହଞ୍ଚିଲା—ବୁଢ଼ା ପୁଷାଣି ଗୋଟାଏ ବଡ଼ ଜଳନ୍ତା

ନିଅଁ ଫାଳଅ—ଧରି ତାର ସାନ ମୁଣ୍ଡଟିରେ ନିସ୍ଠୁର ପାହାରେ ପକାଇଲା । ଏମିତି ତାକୁ ପୋଡ଼ିଗଲା । ମାଡ଼ବାଜି ତାର ମୁଣ୍ଡ ମଧ୍ୟ ଫାଟିଗଲା । ଧାର ଧାର ଲହୁ.ତା ଫଟା ମୁଣ୍ଡରୁ ବୋହି ଆସି ଗ୍ରେଷେଇ ଘରର ଧଳା ଚଟାଣଟାକୁ ଲାଲ୍ କରି ଦେଲା ।

କେହିହେଲେ ବିଲୁଆ ଜୀବଟି ପ୍ରତି ସହାନୁଭୂତି ଦେଖାଇଲେ ନାହିଁ । ସାଆନ୍ତ ମା ସେ ଦିନ ବଡ଼ ଏକାଦଶୀ ବୋଲି ତୁଳସୀ ଚଉରାମୂଳେ ବସି ମାଳି ଜପୁଥିଲେ । ଏମିତି ଚିତ୍କାର ଶୁଣି ଦଉଡ଼ି ଆସି ପୁଝାରୀକୁ ଗୋଟାଏ ଲମ୍ବା ଆଶୀର୍ବାଦକରି କହିଲେ— "ଅନ୍ଧ କରିଚୁ, ବାପ—ବୁଢ଼ାଟିଏ ହୋଇ ଥା' । ଅଲକ୍ଷଣୀ କୁକୁରଟା କଣ ଆଜି ବସେଇ ଜଠେଇ ଦଉଚି କି ? ଦୁଇଥର ପରି ମୋର ପୂଜା ଭୋଗ ମାରି କରିଦେଲଣି ।"

ଏମି ବିଲୁଆ ମାଡ଼ ଜୋରରେ ପଳାଇ ନ ପାରି ସେଇଠି ପଡ଼ି ଧକଉଥାଏ । ସାଆନ୍ତ ମା'ଙ୍କର ବଳ ପାଇ ପୁଝାରୀ ପୁଣି ଆସି ତାର ଫଟା ମୁଣ୍ଡଟାରେ ନିଜର ମୋଟ ଗୋଦର ଗୋଡ଼ରେ ଦୁଇ ଗୋଇଠା ପକାଇଲା । ସେ ବିଲୁଆ ସେଇଠି ସେମିତି ପଡ଼ିଥାଏ । ଖାଲି କୁଳୁ କୁଳୁ କରି ସ୍ନା' ମୁହଁକୁ ତା ମୁହଁକୁ ଅନାଉଥାଏ । ସେଇ ଚାହାଣି ଭିତରେ ସେ ଯେମିତି ଅନେକ କଥା କହି ଯିବାକୁ ଚାହୁଁଥିଲା— ।

ଏମିତି ସମସ୍ତଙ୍କର ଚକ୍ଷୁଶୂଳ । ସେ ଯିମିତି ଗୋଟାଏ ଅଲୋଡ଼ା ପଦାର୍ଥ, ତାର ଜୀବନ ନାହିଁ—ଅନୁଭୂତି ନାହିଁ । ଖାଲି ଉଚ୍ଛିଷ୍ଟ ପଦାର୍ଥ ପରି ସେ ସମସ୍ତଙ୍କର ଅବଶ୍ୟକତାର ବାହାରେ ପଡ଼ି ରହିଥାଏ । କେହି ତାକୁ କେବେ ହେଲେ ଲୋଡ଼େ ନାହିଁ—ଡାକେ ନାହିଁ । ଜୋର କରି ତଡ଼ି ଦେଲେ ମଧ୍ୟ ସେ ଯାଏ ନାହିଁ । ସେ ନିଜ ମନକୁ ଆସେ—ନିଜ ମନକୁ ମଧ୍ୟ ପଡ଼ିଥାଏ । ସମସ୍ତଙ୍କର ମାଡ଼

ଚୋଇଠା ସେ ସବୁ ଦିନେ ସେହିପରି ସହି ଯାଉଥାଏ । କି ଗୋଟାଏ ମାୟା ମମତାରେ କେଜାଣି ସେ ଆମ ଘରଟିରେ ବାନ୍ଧି ହେଲା ପରି ପଡ଼ି ରହିଥାଏ ।

ଆମ ଘରେ ଆଉ ଗୋଟିଏ ମଧ୍ୟ ପୋଷା ଜନ୍ତୁ ଥାଏ । ସେ ହଳଦ ସାରିଆ—ଶୁଆଟିଏ । ତାକୁ ସମସ୍ତେ ଆଦର କରନ୍ତି । ନୂଆବୋହୂ ନିତି ସକାଳୁ ଉଠି ତାକୁ 'ରାମନାମ' ଶିଖାନ୍ତି । ମୋର ସାନ ଭଉଣୀ ହାର ନିତି ତାକୁ ନିଜ ହାତରେ ଦୁଧଭାତ, ନଡ଼ିଆରସ ଖୋଇଦିଏ । ଏପରି କି ବୁଢ଼ା ପୁଷୀମାଇଟା ମଧ୍ୟ ଦିନକେ ସାରିଆକୁ ଦୂରରୁ ଥରେ ଦେଖି ଆସେ—ତାକୁ ଲୁଚେଇ ଲୁଚେଇ ସରକୋସ ଖାଇବାକୁ ଦିଏ । ସାରିଆଟି ବଡ଼ ଗେଲବସର । ସେ ସମସ୍ତଙ୍କର ଆଦର ସ୍ନେହ ପାଇ ତଳେ ଗୋଡ଼ ଦେଉ ନ ଥାଏ । ସେ ଝିମିକୁ ଦେଖିଲେ ପର ଫୁଲାଇ ଥଣ୍ଟ ବଙ୍କାଇ ହାରର ଶିକ୍ଷା ମୁତାବକ ପାଟି କରି କହେ "ଅଇଁଠାଖାଇ କୁଣି—ଅପରଛନୀ କୁଣୀ ଭ-ର୍-ର୍ କ-ର୍-ର୍ ।" ଝିମି ବିଚାରୀ ସେ କଥାରୁ କିଛି ହେଲେ ବୁଝି ପାରେ ନାହିଁ । ତେବେ ସାରିଆ ଯେ ତାକୁ ଥଟ୍ଟା କରୁଛି—ଏଇଟା ବୋଧହୁଏ ସେ କିଛି କିଛି ଜାଣିପାରେ । କାହିଁକି ନା, ସେ ସାରିଆ ଆଡ଼କୁ ଚାହିଁ ଘଡ଼ିଏ ବେଳଯାଏ ଛିଡ଼ା ହୁଏ । ରାଗରେ ତଳେ ଲାଞ୍ଜ ପିଟେ । ଆଉ ତାର ଶୁଖିଲା ଓଠଟାକୁ ଥରକୁ ଥର ଖାଲି ଚାଟୁଥାଏ । ତା ପରେ ସେ ଚୁପ୍ ହୋଇ ସାରିଆର ପଞ୍ଜୁରି ତଳେ କିଛି ନ ଜାଣିଲା ପରି ଶୋଇ ରହେ । ସାରିଆ ଥଣ୍ଟ ଫାଙ୍କ ଦୁଧଭାତ ଖାଇଲାବେଳେ ଯାହା ତଳେ ପଡ଼ିଯାଏ, ସେତିକ ଆନନ୍ଦରେ ଖାଇଦିଏ । ଏହିପରି ଏହି ଅସହାୟ ଅଭିଶପ୍ତ ଜୀବଟିର ଦିନ କଟି ଯାଉଥାଏ ।

ଟମିକୁ ଯେ ସମସ୍ତେ ଭଲ ପାଅନ୍ତି ନାହିଁ ଏଥିପାଇଁ ଟମିର ମଧ୍ୟ କିଛି ଦୋଷ ଅଛି । ସେ ଦେଖିବାକୁ ବଡ଼ କୁତ୍ସିତ । ନିପଟ୍ଟ କାଳିଆ ଦେହଟାଏ । ମୁଣ୍ଡଟା କିମିତି ନିଭୁଳିପରି ଉପର ଆଡ଼କୁ ପଶି ଯାଇଚି; ତେପଟା ଚକଣ ଥୋମଣିଟା । ମୁହଁ ଭିତରୁ ସଫା ବାହାରି ଆସିଲା ପରି ଜଣା ଯାଉଥାଏ । ଖାଇବାକୁ ନ ପାଇ ଟମିର ଦେହଯାକ ଖାଲି ହାଡ଼ଗଣି ଫୁଟି ଦିଶୁଥାଏ । ଆଉ ନାନା ରକମର ଘା, ଯାହା ମଧ୍ୟ ତାର ମଇଳା ପେଟ, ପିଠି ଉପରେ ମାଡ଼ି ଯାଇଥାଏ । ଟମି ଦେହରୁ ସବୁବେଳେ ଟିକ୍, ଡାଆଁଶ, ଉକୁଣିଆ ପୋକ ଖସି ପଡ଼ୁଥାନ୍ତି । ମଣିଷ ତ ସବୁବେଳେ ମଣିଷ । ସେ ତ ଆଉ କିଛି ସାଧୁ ମହାପୁରୁଷ ହୋଇ ନାହିଁ । ସେଥିପାଇଁ ଟମି ଯେ—ସମସ୍ତଙ୍କର ଘୃଣା ଆଉ ଅନାଦରର ପାତ୍ର ହବ, ଏଥିରେ ଆଶ୍ଚର୍ଯ୍ୟର ବିଷୟ ବା କଅଣ ଅଛି ?

ଏଇ ପଡ଼ିଶାଘର ଡାକ୍ତର ବାବୁଙ୍କର ସାନ କୁକୁର 'ହାଲୁଆ'; କି ସୁନ୍ଦର ପରିଷ୍କାର ଚେହେରାଟି ତାର । ଧଳା ଧଳା ଲୋମଗୁଡ଼ିକ ରେଶମୀ ସୂତା ପରି ଚକ୍ ଚକ୍ ଦିଶୁଥାଏ । ସବୁ ଅଣ୍ଟାଟି ଭାଙ୍ଗିହେଲା ପରି । ଆଉ ତାର ବଡ଼ ବଡ଼ କଳା କଳା ଆଖି ଦୁଇଟିର ଦୃଷ୍ଟି ସୁଦୂର ପ୍ରସାରିତ । ଆଉ ଟମି ? ଇସ୍—

ଏହା ଛଡ଼ା ଟମିର ଆଉ ଗୋଟାଏ ମଧ୍ୟ ବଡ଼ ଦୋଷ ଅଛି । ସେଇଟା ତାର ଅତ୍ୟନ୍ତ ଶାନ୍ତ ପ୍ରକୃତି, ସେ କାହାରିକୁ କିଛି କହେ ନାହିଁ । ଘରେ ଯେତେ ଅଚିହ୍ନା ଲୋକଟାଏ ପଶିଗଲେ ସୁଦ୍ଧା ସେ ତାକୁ କାମୁଡ଼ି ଗୋଡ଼ାଏ ନାହିଁ । ଓଲଟି ଯାଇ ତା ଗୋଡ଼ ସନ୍ଧିରେ ମୁହଁ ଲଗେଇ ଗୁଡ଼େଇ ତୁଡ଼େଇ ହୁଏ । ସତେକି ସେ—ଯିମିତି ତାର କେଉଁ ଜନମର ଚିହ୍ନା ଖାଉନ୍ଦ । ଘିଚ ଅଧରେ ଯଦି ଚୋର ପଶେ, ତେବେ ଟମି ପ୍ରଥମେ ଥରେ ଦୁଇଥର ଖୁବ୍ ଜୋରରେ ଭୁକିଦିଏ ।

ମାତ୍ର ଯେବେ ଯଦି ଶୃଙ୍ଖଳ ହୋଇଥାଏ, ତେବେ ସେ ଯେମିତି ଅଗରେ ଦୁଇ ମୁଠା ଶୃଙ୍ଖଳଭଙ୍ଗା ଫିଙ୍ଗିଦେଲେ ଯେମିତି ଚୁପ୍ ହୋଇ ସେଗୁଡ଼ିକର ସଦ୍‌ବ୍ୟବହାର କରିବାରେ ଲାଗିଯାଏ। ଯେତେ ଅପରିଚିତ ମଣିଷଟାଏ ହୋଇଥାନ୍ତୁ ପଛକେ ଯେମିତି ଦେହରେ ଥରେ କଅଁଳ କରି ହାତ ବୁଲାଇ ଦେଲେ ଯେମିତି ଗୋଟିକଯାକ ତାରି ହୋଇଯାଏ। ସେ ତାକୁ କାମୁଡ଼ିବା ଦୂରେ ଥାଉ, ବରଂ ଯାଇ ତା ଦେହରେ ଘସେଇ ଲଦେଇ ହୁଏ। ଏଥିପାଇଁ ଘରେ ସମସ୍ତଙ୍କର ତା ଉପରେ ରାଗ। ଶାନ୍ତ ହେବାଟା ଯେପରି ତାର ଗୋଟାଏ ମସ୍ତ ଦୋଷ। ତାର କ୍ଷମା ନାହିଁ। ସେଥିପାଇଁ ମଣିଷର ଯେଉଁଟା ଭଲ ଗୁଣ ବୋଲି ବିବେଚିତ ହୁଏ, ପଶୁମାନଙ୍କର ସେ ଗୁଣଟା ଗୋଟାଏ ବଡ଼ ଦୋଷ ଭିତରେ ଧରାଯାଏ। ଯେମିତି ଯଦି ଅନ୍ୟ କୁକୁରମାନଙ୍କ ପରି ରାଗୀ ହୋଇଥାନ୍ତା, ମଣିଷ ଦେଖିଲେ କାମୁଡ଼ି ଗୋଡ଼ାଉଥାନ୍ତା, ରାତି ଦିନ 'ଭୁଆଁ' କରି ଭୁକୁଥାନ୍ତା, ତା ହେଲେ ବୋଧହୁଏ ତାର ଗୁଣର ଦାମ ଅଳ୍ପ ଅନେକ ପରିମାଣରେ ବଢ଼ି ଯାଆନ୍ତାଣି। ତାକୁ ଖାଇବା, ପିଇବା ଅଭାବରେ ହାଡ଼ କଙ୍କାଳରୂପ ହେବାକୁ ବୋଧହୁଏ ହୋଇ ନ ଥାନ୍ତା। ମାତ୍ର ଅବୁଝା କୁକୁରଟା ମଣିଷର ଏତେ କୂଟନୀତି ଭିତରେ ପଶି ପାରେ ନାହିଁ। ସେ ସବୁଦିନେ ଶାନ୍ତ ରହିବାକୁ ଭଲପାଏ। ଏଇଟା ତାର ବୁଦ୍ଧିର ଦୋଷ କି ପ୍ରକୃତିର ଦୋଷ ଠଉରାଇବା ବଡ଼ କଠିନ। କାରଣ ସେ ଶୃଙ୍ଖଳ ହୋଇଥିଲେ କେଉଁଦିନୁ ନିଜର ପ୍ରକୃତି ବଦଳାଇ ସମସ୍ତଙ୍କର ଆଦର ମମତାଟିକି ଆଦାୟ କରି ନିଅନ୍ତାଣି; ଯେମିତି ଏପରି ଶାନ୍ତ ହେବାର ଅଳ୍ପ ଗୋଟାଏ ମଧ୍ୟ କାରଣ ଅଛି। ଚବିଶ ଘଣ୍ଟା ଗୋଇଠା ମାଡ଼ ଖାଇ ଖାଇ ସେ ବା ଶାନ୍ତ ନ ହୋଇ ରହିଥାନ୍ତା କିପରି ? ଏତେ ଅଘାତ, ଉପାସ ଭିତରେ ନିଜର ତେଜଟିକି

ବଜାଏ ରଖିବା କଣ ସହଜ କଥା ? ପ୍ରତିଦିନ ଉପାସ, ଶୋକ, ବାଧା, ଗୋଇଠାରେ ସଢ଼ି ସଢ଼ି ଟମି କାଠ ପଥର ପରି ଜଡ଼, ଅଚଳ ହୋଇ ଯାଇଚି । ପାଟିକରି ଥରେ ଭୁକିବା ପାଇଁ ମଧ୍ୟ ତାର ସାହସ ନାହିଁ । ରାଗିବା ପାଇଁ ମଧ୍ୟ ତା ଦେହରେ ବଳ ନାହିଁ— ଇଚ୍ଛା ମଧ୍ୟ ନାହିଁ ।

ତା ପରେ ଆଦର, ସ୍ନେହ କାହାକୁ କହନ୍ତି, ଟମି ତାର ପିଲାଟି ଦିନରୁ ମଧ୍ୟ ଜାଣି ନାହିଁ । ସେଥିପାଇଁ କେହି ଯଦି ଟିକିଏ କଅଁଳ କରି ତା ଦେହରେ ହାତ ବୁଲାଇ ଦିଏ, କି ଟାକରା ଫୁଟାଇ ଦିଏ, କି ମୁଢ଼ି ଭୁଜା ଚଣ୍ଡାଏ ବୁଣିଦିଏ, ତେବେ ସେ ଯେତେ ଚୋର, ଡକାୟତ, ଅଚିହ୍ନା ଲୋକ ହୋଇଥାନ୍ତୁ ପଛକେ, ଟମି ଗୋଟିକିଯାକ ତା ଆଡ଼କୁ ଚାଲିପଡ଼େ । ମଣିଷର ଏ କଅଁଳ ସ୍ୱଭାବଟା ତାକୁ ନୂଆ ପରି ଲାଗେ । ଦୁନିଆରେ ଯେ ମଣିଷ ତାକୁ ଆଦର କରିପାରେ, ଖାଇବାକୁ ଦେଇପାରେ, ତା ଦେହରେ ହାତ ବୁଲାଇ ଦେଇପାରେ, ସେଇଟା ସେ ସେଦିନ ଯେମିତି ନୂଆ କରି ଅନୁଭବ କରେ । ତା ଜୀବନରେ ସେଇତିକ ଯେ ଚରମ ଉପଭୋଗ ! ସେହି ସୁନ୍ଦର ମୁହୂର୍ତ୍ତିଟି ତାର ଜଡ଼ ଜୀବନରେ ଚେତନାର ବିଦ୍ୟୁତ୍ ଖେଳାଇଦିଏ । ସେ ସବୁ ଭୁଲିଯାଇ ସେହି ଲୋକଟିର ଦେହରେ ଗୁଡ଼େଇ ହୋଇଯାଏ । ସେଥିପାଇଁ ଅଜଣା ଅଚିହ୍ନା ଲୋକ ଘରେ ପଶିଲେ ଟମିର ସେମାନଙ୍କୁ କାମୁଡ଼ି ଗୋଡ଼ାଇବା ଦୂରେ ଥାଉ, ବରଂ ସେ ଯାଇ ସେମାନଙ୍କ ଗୋଡ଼ ହାତ ଚାଟି ଦିଏ । କୁଁ କୁଁ ହୋଇ ସେମାନଙ୍କ ଗୋଡ଼ ସନ୍ଧିରେ ପଶିଯାଏ । ଏହିପରି ଟମିର ପ୍ରକୃତି । ଏହି ପ୍ରକୃତି ଯୋଗୁଁ ଟମି ଉପରେ ଆମ ଘରେ ସମସ୍ତେ ବିରକ୍ତ । ମାତ୍ର ଟମି ସବୁଦିନେ ସେହି ଟମି ।

ଭାଇଙ୍କର ଝିମିଟାକୁ ଘରୁ ତଡ଼ି ଦେବାଲାଗି ବହୁତ ଦିନରୁ ଇଚ୍ଛା । ସେ ଦୁଇ ତିନିଥର ମଧ୍ୟ ପୂଝାରୀଙ୍କୁ ସେକଥା କହି ସାରିଲେଣି । ପୂଝାରୀ ମଧ୍ୟ ହୁକୁମ ତାମିଲ୍ କରିବାରେ କେବେ ତ୍ରୁଟି କରି ନାହିଁ । ମାତ୍ର ଝିମି ବିଚାରୀକୁ ଯେତେ ମାଡ଼ପିଟ କଲେ ମଧ୍ୟ ସେ ଯାଏ ନାହିଁ । ଦୁଇ ଚାରି ଖଣ୍ଡ ବାଉଁଶ ଠେଙ୍ଗା ପଛକେ ତା ପିଠିରେ ବାଜି ଭାଙ୍ଗିଯିବ, ଝିମି ଆମ ଘର ଛାଡ଼ି ଅନ୍ୟ କୋଉଠିକି ଯିବ ନାହିଁ । ଝିମି ଯେତେ ଉଲୁ ହେଲେ କଅଣ ହେବ, ଭାଇ ଯେ ତାକୁ ଆଦୌ ଭଲ ପାଆନ୍ତି ନାହିଁ, ଏଇଟା ବୋଧହୁଏ ସେ ମନେ ମନେ ବୁଝିପାରେ । ସେଥିଲାଗି ସେ ବାଟଘରେ ଭାଇଙ୍କ ଚଟିଶବ୍ଦ ଶୁଣିବା ମାତ୍ରେ ଏକା ଦମକେ ଦଉଡ଼ି ପଳାଇଯାଏ । ଭାଇ ସାଢ଼େ ଦଶଟାରେ କଚେରୀକୁ ଗଲାପରେ ସେ ଯାଇ ଆମ ଘରକୁ ଲେଉଟେ । ଅଇଁଠା କଣ୍ଟା ଯାହା ଯେଉଁଠି ପାଏ, ଖାଇ ଦେଇ ପୁଣି ଭାଇଙ୍କ ଫେରିବାବେଳ ହେଲାରୁ ଘର ଛାଡ଼ି କୁଆଡ଼େ ପଳାଇଯାଏ । ଭାଇଙ୍କର ଘରେ ରହିବା ସମୟଟା ତାର ଯେପରି ମୁଖସ୍ଥ ହୋଇ ଗଲାଣି ।

ଏଇ କଥାଟାକୁ ନେଇ ସେଦିନ ଭାଉଜବୋହୂ ଆଉ ଭାଇଙ୍କ ଭିତରେ ଗୋଟାଏ ବଡ଼ ଧରଣର କଳି ଘଟି ଯାଇଛି । ଘଟଣାର ସୂତ୍ରପାତ ହେଲା—ବୁଲୁର ପଢ଼ାପଢ଼ି ନେଇ । ବୁଲୁ ଭାଇଙ୍କ ପାଖରେ ଜମା ପଢ଼ିବାକୁ ଚାହେଁ ନାହିଁ । ଭାଇ ବଡ଼ ରାଗୀ । ଟିକିଏ କଣେ ଭୁଲ ହୋଇଗଲେ ହଠାତ୍ ଠୋ କିନା ଚଟକଣାଟାଏ ବସାଇ ଦେବେ ।

ସେଥିପାଇଁ ବୁଲୁ ପଢ଼ାବେଳ ହେଲାରୁ ଭାଉଜବୋହୂଙ୍କ ପାଖରେ ଯାଇ ଲୁଚେ । ଭାଇ ବିରକ୍ତ ହୋଇ ତାକୁ ଟଣାଓଟରା କରନ୍ତି । ଭାଉଜବୋହୂ ବୁଲୁର ପକ୍ଷ ନେଇ ବହୁତ ଓକାଲତି କରନ୍ତି । ସେଦିନ ଭାଇ କାହିଁକି ବୁଲୁକୁ ଗୋଟାଏ ଚଟକଣା ମାରିଦେଲେ । ବୁଲୁ ଭେଁ ଭେଁ କାନ୍ଦି ଉଠିଲା । ଭାଉଜବୋହୂଙ୍କୁ ଦେଖେ କିଏ ?

ସେ ବୃନ୍ଦକୁ ମଢ଼ା ସ୍ଥାନରୁ ଟାଣି ଅଣି ଭାଇଙ୍କ ଢଡ଼ା ଢଡ଼ା ଶୁଣାଇ ଦେଲେ ।

"ତୁମ ଦାଉରେ ସାମାନ୍ୟ କୁକୁରଟାଏ ତ ଘର ଛାଡ଼ି ପଳାଇ ଯାଉଚି । ଇଏ ତ ସହଜେ ପିଲାଟାଏ—ମଲା ଯା, ଦେଖିନା ଅଉ ସାତ ଜନମରେ ଇମିତି ପାଠପଢ଼ା—"

ଭାଇ ବଡ଼ ଅପ୍ରସ୍ତୁତ ହୋଇପଡ଼ିଲେ । ଭାଉଜବୋହୂଙ୍କର ଦୟାଟା ଯେ ସେହିଦିନଠୁଁ ଟମି ପ୍ରତି ଟିକିଏ ବୃଦ୍ଧି ପାଇଲା ତା ମଧ୍ୟ ନୁହଁ । ଟମି କପାଳ ସବୁଦିନେ ଏକା ।

ଘର ଭିତରେ ଏକା ହାରାହିଁ ଟିକିଏ ଟମିକୁ ଭଲ ପାଉଥିଲା । ମାନ୍ଧ ବେଲ ଭୁଅ ଜନ୍ମ ହେଲା ଦିନଠୁଁ ସେ ଅଉ ଟମିକୁ ପାଖ ପୁରାଉ ନାହିଁ । ଗୁହାଳୀକୁ ଗଲାବେଳେ ମଧ୍ୟ ବେଲକୁ କାଖରେ ଯାକି ସଙ୍ଗରେ ନେଇଯାଏ ।

ଶୋଇଲାବେଳେ ବେଲକୁ କୋଡ଼ରେ ପୁରାଇ ଶୁଏ । ତା ପରେ ହାରର ପୋଡ଼ପିଠା ଖଣ୍ଡିକ ଟମି ତଳୁ ଗୋଟାଇ ଖାଇଦେଲା ଦିନଠୁ ସେ ବି ଟମି ଉପରେ ଖଡ଼୍‌ଗହସ୍ତ । ଇମିତି ଟମି ସମସ୍ତଙ୍କର ଗାଳି ମାଡ଼ର ବୋଝଂ ବହି ଏକା ପଡ଼ିଥାଏ । ଘରଯାକର ସଞ୍ଚିତ କ୍ରୋଧ ତାକୁ ଏକାକିନୀ ନତମସ୍ତକରେ ବହନ କରିବାକୁ ହୁଏ । ସେ ଦିନେ ହେଲେ ଆପତ୍ତି କରେ ନାହିଁ । ବିଦ୍ରୋହ କରେ ନାହିଁ । ଅସନ୍ତୋଷର ଭାବ ମଧ୍ୟ କୌଣସି ଭାବ-ଭଙ୍ଗୀରେ ପ୍ରକାଶ କରେ ନାହିଁ ।

ସବୁ ସେ ଚୁପ୍ କରି ସହେ । ଖାଲି ଅଇଁଠାକଣ୍ଟା ଗଣ୍ଡାକୁ ଅଶ୍ରୟ କରି ଟମି ଆମ ଘରେ ପଡ଼ି ରହିଥାଏ । ପୃଷ୍ଠାଗ୍ରର ଠେଙ୍ଗା, ସାଆନ୍ତମା'ଙ୍କ ଛଞ୍ଚୁଣୀ ଫୋପଡ଼ା, ଭାଇଙ୍କ ଚଟି ମାଡ଼ ସବୁ ସେ

ହଜମ କରେ । କାହିଁକି ଯେ କରେ ମୁଁ କିଛି ବୁଝି ପାରେ ନାହିଁ । ଖାଲି ଗୋଟାଏ ଗମ୍ଭୀର ଦୀର୍ଘଶ୍ୱାସ ପକାଇ ମୁଁ ମନେ ମନେ କହେ—"ହାୟ ରେ ଅଭିଶପ୍ତ ଜୀବ ।"

ସେଦିନ ସ୍କୁଲରୁ ଫେରି ଘରେ ପହଞ୍ଚୁ ପହଞ୍ଚୁ ଶୁଣିଲି—ସାଆନ୍ତମା ବ୍ୟଥିତ ସ୍ୱରରେ କହୁଚନ୍ତି—"ଏ ହାରି, ମାଅଟା ପରା, ଯା—ମ, ଟିମିକୁ ଜବୁମ କରି ଔଷଧ ଟୋପିଏ ଦେଇଆ—ମ । ବିଚାରୀ ଅଜି ସକାଳୁ କିଛି ଖାଇନାହିଁ । ଅହା ! ତଣ୍ଟି ତ ଶୁଖିଯିବଣି ! ଏ ପୂଝାରୀ, ତୁମେ ଟିକିଏ ଯାଅ—ମ ।"

କଥାଟା କଣ କିଛି ବୁଝି ପାରିଲି ନାହିଁ । ମନେ ମନେ ବଡ଼ ବିସ୍ମିତ ହେଲି । ଭାବିଲି ଅଜି ଟିମି ପ୍ରତି ସାଆନ୍ତମାଙ୍କର ଏପରି ଅକସ୍ମିକ ଅଦରର କାରଣ କଣ ?

ମୋତେ ଦେଖି ହାରି ମୋ ପାଖକୁ ଦଉଡ଼ି ଅସି ମୋ ହାତଟାକୁ ଧରି କହିଲା—"ନନ୍ଦା ଭାଇ, ଦଉଡ଼ି ଅସ, ଟିମିକୁ ଦେଖିବ ଅସ ।" ହାରି ମୋ ହାତଟାକୁ ଟାଣି ଟାଣି ମୋତେ ନେଇ ଅମ ଖଳାବାଡ଼ିରେ ହାଜର କଲା । ସେଠାରେ ଯାହା ଦେଖିଲି, ମୁଁ ଅଦୌ ବିଶ୍ୱାସ କରି ପାରିଲି ନାହିଁ । ଅରବ୍ୟ ଉପନ୍ୟାସ ପରି ସବୁ ଘଟଣାଟା ମୋତେ ଖାଲି ସ୍ୱପ୍ନ ପରି ମାଲୁମ ହେଉଥାଏ ।

ଯାଇ ଦେଖିଲି, ଖଣ୍ଡେ ସଫା ଅଖା ଉପରେ ଟିମି ଗୋଡ଼ହାତ ଲମ୍ବାଇ ଅରାମରେ ଶୋଇଛି । ତାରି ବଡ଼ ବଡ଼ ଅଖି ଦୁଇଟି ଅଳ୍ପ ଅଳ୍ପ ମୁଦି ହୋଇଛି । ଅଉ ତା ଚାରି ପାଖରେ ଚାରୋଟି ଛୁଆ ତାକୁ ଘେରି ଶୋଇଛନ୍ତି । ଭଉଜବୋହୂ ଅଉ ପୂଝାରୀ

ଦୁହେଁଯାକ ଦୁଇବାଟି ଦୁଧ ତା ମୁହଁ ପାଖରେ ଧରିଛନ୍ତି । ପୁଷ୍‌ଟା
ଝିମି ମୁଣ୍ଡଟିକୁ ଅଣ୍ଟିସି ତାକୁ 'ଖା—ଖା' ବୋଲି କହୁଛି ।

ଆନନ୍ଦ ଓ ଅସ୍ୱସ୍ତିରେ ମୋ ବୁକୁ ଭିତରଟା ନାଚି ଉଠିଲା । ଯେଉଁମାନେ ଏ ଅସହାୟ ଅନାଦୃତ ଜୀବନଟିର ଆଜି ଏତେ ଅଦରର କାରଣ, ସେହିମାନଙ୍କ ଆଡ଼କୁ ମୁଗ୍ଧ ଏବଂ ବିସ୍ମିତ ଦୃଷ୍ଟିରେ ମୁଁ ଖାଲି ଚାହିଁ ରହିଲି ।



## ସୁଅ ମୁହଁରେ ପତର

ଅପର୍ତ୍ତି କ୍ଷେତରେ ହଳ କରୁଛନ୍ତି—ତାର ଚିକ୍କଣ କଳା ବଳିଷ୍ଠ ଦେହରୁ ଝାଳ ପାଣି ଭଳି ବୋହି ଯାଉଛି—ହଳ କରୁ କରୁ ଅପର୍ତ୍ତି କେତେ କଣ ଭାବି ଯାଉଛି—ଭାବୁ ଭାବୁ ଲଙ୍ଗଳ କଣ୍ଟି ଉପରେ ତା ହାତ କୋହଳ ହୋଇଗଲେ ବଳଦ ଦହଟା ଧିମେଇ ଚାଲୁଛନ୍ତି—ଅପର୍ତ୍ତି ଡାହାଣ ହାତରେ ପାଞ୍ଚଣଟାରେ ବଳଦ ଦହଟାକୁ ପିଠି ପିଠି କହି ଉଠେ—'ଅଚ୍ଛା ବଅଲ—ଚଳନ୍ତି ନାହାନ୍ତି ମୋଟେ—'

ବଳଦ ଦହଟା ଟିକିଏ ଜୋରରେ ଚାଲିବାକୁ ଆରମ୍ଭ କଲେ ଅପର୍ତ୍ତି ପୁଣି ତା ଭାବନା ରାଜ୍ୟକୁ ଫେରିଯାଏ—ତାର ଭାବିବାକୁ ଅଛି ଅନେକ କଥା—ଅଠ, ନଅ ବର୍ଷର ଘଟଣା—ଛବି ଭଳି ସେଗୁଡ଼ା ତା ଆଖି ଆଗରେ ଭାସି ଯାଉଛି। କା'ଲି ଭଳି ମନେ ହଉଛି ସେସବୁ କଥା—ଅପର୍ତ୍ତିକୁ ଆଶ୍ଚର୍ଯ୍ୟ ବି ଲାଗୁଛି—ଏଇ ଅଠ ନଅଟା ବର୍ଷ ଆଗରୁ ସବୁ ଯିମିତି ଭଲ ଥିଲା—ଲୋକେ ଦୁଃଖେ ସୁଖେ ଶାଗ ପେଜ ଖାଇ ଆରାମରେ ଚଳି ଯାଉଥିଲେ—

ଲୁଅଡ଼ୁ ଅସିଲ ଏ ହନାମାନଅ ଲଢ଼େଇ—ସବୁ ବଦଳେଇ ଦେଇଗଲା । ଇଂରାଜୀ ସରକାରର ସିଅଡ଼େ କୋଉ ଜାରମାନୀ ନା କଣ ତା ସାଙ୍ଗରେ ଯୁଦ୍ଧ ଲାଗିଲା—ଅମର କଣ ଗଲା ସେଇଠୁଁ ?

କହୁଲେ କଣ ନା—ଜାପାନୀ ମାଡ଼ି ଅସୁଛି—ଅମ ଦେଶକୁ ନେଇଯିବ—ଲଢ଼େଇକୁ ବାହାରିପଡ଼—

କହୋ—ଜାପାନୀ ନେଲେ କେତେ—ଇଂରେଜୀ ନେଲେ କେତେ—ଅମର କୋଉ ଦୁଃଖ ଯାଉଛି—ଯିଏ ଅମ ଉପରେ ରଜା ହେବ ସିଏ ତା ଦେଶକୁ ସବୁ ଲୁଟ କରି ବୋହିବ—

ଏବେ ଯୁଦ୍ଧ ସରିଲାଣି ତିନି କି ଚାରିବର୍ଷ ହେଲା—ଜିନିଷ ପତରର ଦରଦାମ କମନ୍ତା କଣ ନା ଅଧିକ ବଢୁଛି ।

ଅପର୍ତ୍ତିକୁ ବଡ଼ ଅଶ୍ଚର୍ଯ୍ୟ ଲାଗେ—ଯୁଦ୍ଧ ହଉଛି କୋଉଠି, ଜିନିଷ ମହଙ୍ଗା ହଉଛି କୋଉଠି—

ଆଗ ଆଗ ଅପର୍ତ୍ତି ଆଉ ଅପର୍ତ୍ତି ଭଳି ଲକ୍ଷ ଲକ୍ଷ ଚାଷୀ ଏଥିର ଭେଦ ପାଇଲେନି—ଲଢ଼େଇ ହବାର କେତେ ମାସ ପରେ ଯେତେବେଳେ ଉଡ଼ାଜାହାଜଗୁଡ଼ାକ ଅପର୍ତ୍ତି ହଳ କଲା-ବେଳେ ତା ମୁଣ୍ଡ ଉପର ଦେଇ ଉଡ଼ୁଥାନ୍ତି ଘଁ ଘଁ କରି ସେ ହଳ ଛାଡ଼ି ଦେଇ ହାଡ଼ପାଖ ବୁଦାମୂଳେ ଲୁଚିଯାଇ ଭୟାର୍ତ୍ତ ଆଖିରେ ସେଗୁଡ଼ାକ ଆଡ଼େ ଚାହିଁ ରହେ—ବଳଦ ଦିଟା ବି କାନ ଟେରିକି ଅଚିହ୍ନିଅ ଅମୁହାଁ ଦାଉଡ଼ନ୍ତି ହାଳ ଜୁଆଳି ସାଥିରେ—

କିଛିଦିନ ପରେ ତା ଭୟ କଟିଗଲା—ଏକାସାଙ୍ଗେ ଆଠ ଦଶଟା ଉଡ଼ାଜାହାଜ ତା କ୍ଷେତ ଉପର ଦେଇ ଉଡ଼ି ଗଲାବେଳେ ତାକୁ ଭାରି ଖୁସି ଲାଗେ—ତାର ମନେହୁଏ ଉଡ଼ାଜାହାଜଗୁଡ଼ାକ ତାଙ୍କ ଗାଁ ଉପର ଦେଇ ଯେତେବେଳେ ଉଡ଼ି ଯାଉଛନ୍ତି ନିଶ୍ଚୟ

ଏଇ ପାଖରେ କୋଉଁଠି ଯୁଦ୍ଧ ଲଗିଚ—ଅଉ ସେ ଯୁଦ୍ଧରେ ତାଙ୍କ ଗାଁ, ସେ, ସମସ୍ତେ ଯିମିତ ଭାଗ ନେଇଛନ୍ତି ।

ଯୁଦ୍ଧର ଏଇ କାଳ୍ପନିକ ଅନୁଭୂତ ତା ମନରେ ଖୁବ୍ ଉତ୍ତେଜନା ଅଉ ଆନନ୍ଦ ଖେଳେଇ ଦେଇଚ—

କମେ ସେ ଉତ୍ତେଜନା ତାର ସ୍ୱାଭାବକ ଗତରେ କମି ଅସିଚ—ଦନେ ନୁହେଁ, ଅଧେ ନୁହେଁ ବର୍ଷ ବର୍ଷ ଧର ଯୁଦ୍ଧ ଲଗିଚ—କନ୍ତୁ ଯୁଦ୍ଧର ଶବ ଅପର୍ତ୍ତି ଦେଖିବାକୁ ପାଉନ—କେତେ ଦନ ବା ଅଉ ସେ ଉତ୍ତେଜନା ରହନ୍ତା ! !

ଲଢ଼େଇ ଯୋଉଠି ଲଗୁ—ଅପର୍ତ୍ତି ମନରେ ଅସିଛୁ ବଷାଦ—ସବୁ ଜନଷର ଦାମ ବଢ଼ିଗଲ—କିରସିନ, ଗୁଡ଼ୁଉଲ, ଲୁଗା ତ ଅଉ ମିଳବାକୁ ନାହିଁ—ଗୁଡ଼ୁଉଲ ଟଙ୍କାକୁ ଦ ସେର—ସେ ବ ଘୋଡ଼ା ଦାନା—ସେଥିରେ ବ କଳାପୋତେଇ—ଉବର ଖଣ୍ଡକରେ ଧୂଳ ଅଙ୍ଗୁଠି ବହଳରେ ଜମି ଗଲଣି—ଟୋପେ କିରସିନ ବ ତାକୁ ମିଳୁନ—ରାତ ଅନ୍ଧାରରେ ଯିବା ଅସିବା କରବାକୁ ତା ନଜର କିଛୁ କଷ୍ଟ ହଉନ—କିନ୍ତୁ ତା ବୁଢ଼ୀମା—ଦନବେଳେ ବ ଅଖିକ ଭଲ ଦଶୁନ—ସନ୍ଧ୍ୟା ହେଲରୁ କୁଅଡ଼େ ଟିକଏ ଗୋଡ ବଢ଼େଇଲେ କଚଡ଼ା ଖାଏ—ଅପର୍ତ୍ତି କେତେଥର ବୁଢ଼ୀମାକୁ ଉଠେଇ ଧରିଛୁ—ଦେହର ପୀଡ଼ା ଖାଇବାକୁ ତେଲ ମାଲସ କର ଦେଇଛୁ—

ତା ବୁଢ଼ୀମାର ଏଇ ଦୁଃଖ ସେ ଅଉ ସହ ପାରେନ—ଧର୍ମୀ ସାହୁ ପାଖରେ ଟୋପେ କିରସିନ ପାଇଁ କେତେ ନେହୁର ହୁଏ—କିନ୍ତୁ ପାଏନ—

ଦନେ ଅନ୍ଧାରରେ ଯେମିତ ଗୋଡ଼ ଖସିଯିବାରୁ ତା ବୁଢ଼ୀମା ଅଖି ବୁଜିଲ—ଅପର୍ତ୍ତିର ଶାନ୍ତ ନରୀହ ମନ ବଦ୍ରୋହ କର ଉଠିଲ—

ଅବାରିତ ଅଶ୍ରୁ ବର୍ଷଣ କରି ସେ ତାର ଉଦ୍‌ବେଳିତ ଚିତ୍ତକୁ ଲଘୁ କରିବାକୁ ଚେଷ୍ଟାକଲା—

ଅପର୍ତ୍ତିର ଗୋଟିଏ କ୍ଷୋଭ—ସେ ଯେଉଁ ଭୂଇଁରେ ପ୍ରତି ବର୍ଷ ସୁନା ଫଳାଏ ସେ ଭୂଇଁର ଫସଲ ଖାଏ ତା ସାଉକାର—ତା ଉପାସିଆ ପେଟକୁ କିଛି ଯୋଗାଏନା ଏଇ ଭୂଇଁ—

ସମସ୍ତେ କହନ୍ତିଲେ ଅପର୍ତ୍ତିକୁ 'ବାହା ହ'—

ଅପର୍ତ୍ତି ବି ଭାବୁଥିଲା ସେଇଆ—ବୁଢ଼ୀମା ଆଖି ବୁଜିଲା ଦିନୁ ଗଣ୍ଡେ ଫୁଟେଇ ଦବାକୁ କେହି ନାହାନ୍ତି—

କିନ୍ତୁ ଯୁଦ୍ଧବେଳେ ଚିଜପତ୍ର ମହଙ୍ଗାରେ ତାର ସାହସ ହେଲନି—କେହି କହିଲେ ଉତ୍ତର ଦିଏ—ଲଢ଼େଇଟା ସରିଯାଉ—ନିଜେ ଖାଇବାକୁ ପାଉନି—ଘରେ ଆଣି ହାତୀ ବାନ୍ଧିବି ?

ମୁହଁ ଜୋରରେ କିଛିଦିନ ଏମିତି ମାରିନେଲା ସିନା—କିନ୍ତୁ ମନର ଗୋଟିଏ ନିଭୃତ କୋଣରେ ଗୁରେଇର ଛବି ମଝିରେ ମଝିରେ ଝଲସି ଉଠି ତାକୁ ଅସ୍ଥିର କରିପକାଏ ।

ସବୁଦିନେ ବଡ଼ି ଭୋରରୁ ହଳ ବଳଦ ଧରି ଅପର୍ତ୍ତି ବିଲକୁ ଗଲାବେଳେ ଗୁରେଇ 'ସାନସାନ୍ତ'ଙ୍କ ପୋଖରୀରୁ ଗାଧୋଇ ଫେରୁଥାଏ—ମୁଣ୍ଡରେ ଗୋଟେ ପାଣି ଭର୍ତ୍ତି ଗରା—କ୍ଷୀଣ କଟୀ ଓ ବାଁ ହାତର ବେଷ୍ଟନୀ ଭିତରେ ଆଉ ଗୋଟିଏ ଗରା ଧରି ଗୁରେଇ ତା'ପାଖ ଦେଇ ଚାଲିଯାଏ—ଅପର୍ତ୍ତିର ଅବାଧ ଆଖି ଗୁରେଇର ସିକ୍ତ ବସନ ଭେଦ କରିଯାଏ—ଅଣ୍ଟାପାଖ ଗରାରୁ ପାଣି ଚହଲି ଗୁରେଇର ଲଘୁ ଦେହରେ ଜଡ଼ି ଯାଇଥାଏ—ଅପର୍ତ୍ତି ମୁହଁ ଫେରେଇ ଚାହେଁ—

କେତେଥର ସେ ଗୁରେଇ ପାଖରେ ଧରାପଡ଼ି ଯାଇଛି—କିନ୍ତୁ ଗୁରେଇ ଭର୍ତ୍ସନା କରିବା ବଦଳରେ ତାର ସ୍ମିତ ହାସହାସ ତାକୁ ବରଂ ଉତ୍ସାହିତ କରିଛି ।

ଅପର୍ତ୍ତି ଆଜି ବେଶିଦିନ ଏକା ଏକା ଚଳି ପାରନ୍ତି ନାହିଁ—ଦିନେ ଗୁରେଇ ଗାଧୋଇ ଫେରିଲାବେଳେ ସେ ତାକୁ ଅଟକେଇ ପଚାରିଲା—

ଗୁରେଇ କୌଣସି ଉତ୍ତର ନ କରି ହଁ ଭରିଲା—ଘମାଘୋଟ ଯୁଦ୍ଧବେଳେ ଅପର୍ତ୍ତି ବାହା ହେଲା—ଯେତେବେଳେ ପେଟକୁ ଦାନା ପିଠିକୁ କନା ମିଳୁନି—ଜାପାନୀ ମାଡ଼ ଆସୁଚି ସିଆଡ଼ୁ—

ବାହାଘରର ପ୍ରଥମ ନିଶା କଟିଯାଏ—ତାଙ୍କର ଦରିଦ୍ର ସଂସାରର ଅଭାବଗୁଡ଼ିକ କ୍ରମେ ସ୍ପଷ୍ଟତର ହୋଇଉଠେ—କିଛିଦିନ ପରେ ଅପର୍ତ୍ତି ଦେଖିଲା—ଗୁରେଇର ଖଦି ଧୋତି କେତେଠେଇଁ ଚିରି ଚିରି ଗଲାଣି—କେତେ ଚେଷ୍ଟା କରି ମଧ୍ୟ ଅପର୍ତ୍ତି ଗୁରେଇ ପେଇଁ ଖଣ୍ଡେ ଖଦି କିଣି ପାରେନି—

ଯୁଦ୍ଧ ବଜାରରେ କଳାପୋତେଇ କରି ଧନୀସାହୁ କୋଠା ବାନ୍ଧେଇବାକୁ ବସିଲାଣି—ପଇସା ଯାଚି ମଧ୍ୟ ଧନୀସାହୁଠୁଁ ସେ ଖଦି ଖଣ୍ଡେ ପାଇ ପାରିଲା ନାହିଁ । କେତେ ନେହୁରା ହେଲେବି—କଳାପୋତେଇ ଦବାକୁ ତାର ବା ପଇସା କାହିଁ ?

ଗୁରେଇ ଚିରା ଶାଢ଼ୀରେ ତାର ପୂର୍ଣ୍ଣ ଅବୟବର ଲଜ୍ଜା ଆଜି ଢାଙ୍କି ପାରୁନି—ନିଜେ ଅପର୍ତ୍ତି ବି ସହି ପାରୁନି ଗୁରେଇ ଅଡ଼େ—

ବେଳେ ବେଳେ ଅପର୍ତ୍ତି ମନରେ ଭାରି ରାଗ ହୁଏ । ଭାବେ—ଧନୀସାହୁ ଦୋକାନରେ ନିଆଁ ଲଗେଇଦବ—କିନ୍ତୁ କଣ ଭାବି ପୁଣି ଦବିଯାଏ—

ଦିନେ ଗାଁର ସମସ୍ତେ ଖବର ପାଇଲେ ସରକାର ଜାଉଛନ୍ତି—ସରକାରୀ କର୍ମଚାରୀମାନେ ଗାଁ ଗାଁ ବୁଲି ଖବରଟା ଶୁଣେଇ ଦେଇଗଲେ—

ଘଣ୍ଟର ବାହାରର ଲାଉଡ଼ସ୍ପିକରର ଗାଁ ଗଣ୍ଡା ଫଟେଇ ପକେଇଲେ—

ସମସ୍ତେ ଶୁଣି ଖୁସିହେଲେ—ଅପର୍ତ୍ତି ଖୁସିହୋଇ ଭାବିଲା ଏଥର ନିଶ୍ଚେ ତା ଦୁଃଖ ଯିବ—ଲୁଗାପଟା ଶସ୍ତା ହବ—ତା ଗୁରେଇ ଆଉ ସତର ଗଣ୍ଠି ଖଦଡ଼ ପିନ୍ଧିବନି—ଗୁରେଇ ଖଦଡ଼ରେ ନଖବ ହାଲରେ ମଇଳା ଜମିଲାଣି—କିନ୍ତୁ କଣ କରାଯିବ—କାଟିବାକୁ ବସିଲେ ତ ଖଦଡ଼ଟି ଫୁର୍ଫୁର୍ ହୋଇ ଚିରିଯିବ—

ସରକାର କିଣିଛନ୍ତି ବୋଲି ଗାଁରେ ଗରିବଗୁରୁବାଙ୍କୁ ଲୁଗାବଣ୍ଟା ହବାପାଇଁ ଢେଙ୍ଗୁର୍ ଦିଆହେଲା—ଅପର୍ତ୍ତି ପଚାରିଲା ଗୁରେଇକି—

“ଗୁରେଇ ଲୋ ଯିବୁ ?”—ଲୁଗା ବଣ୍ଟା ହଉଛି—ଏତେ ଦୁଃଖରେ ବି ଅପର୍ତ୍ତି ଉପରେ ଟିକିଏ ହେଲେ ବିରକ୍ତ ନ ହୋଇ ଗୁରେଇ କହିଲା—ମୁଁ କେମିତି ଯିବି ମ ଏଇ ଛିଣ୍ଡା ଲୁଗା ପିନ୍ଧି ? ହେଣ୍ଡ୍ର ଛିଣ୍ଡ଼ ପଡ଼ିବ ଏତେ ଲୋକଙ୍କ ଭିତରେ—

ଅପର୍ତ୍ତି ବୁଝିଲା—ତେଣୁ ସେ ଏକା ଗଲା—ଖଣ୍ଡିଏ ଷ୍ଟାଣ୍ଡାର୍ଡ଼ ଧୋତି ମିଳିଲା ତାକୁ—ଫେରିଆସି ଗୁରେଇକି ଧୋତିଟି ଦେଇ କହିଲା—ଯାଇଥିଲେ ଖଣ୍ଡେ ଲୁଗା ପାଇଥାନ୍ତୁ—ନେ, ପିନ୍ଧ ଏଇଟାକୁ—ମୋର ଚଳିଯିବ ।

ଯୁଦ୍ଧ ସରିଗଲା—ସାହୁକାର ଖେତରେ ହଳ କଲାବେଳେ ଅପର୍ତ୍ତି ଆଉ ଉଡ଼ାଜାହାଜର ଘଁ ଘଁ ଶବ୍ଦ ଶୁଣିବାକୁ ପାଇଲା ନାହିଁ—

ଦିନ ଗଡ଼ି ଚାଲିଲା—କିନ୍ତୁ ଚାଉଳ, ଲୁଗା, କିରାସିନି ଦର ଆଉ କମିଲା ନାହିଁ । ଅନାହାର, ଅର୍ଦ୍ଧାହାର ଓ ଅଯତ୍ନରେ ଗୁରେଇର ସୁନ୍ଦରପଣିଆ କମି ଆସିଲାଣି । ଦେଢ଼ବର୍ଷ ଆଗରୁ ଯେଉଁ ମିଣିଫି ଓଢ଼ଣା ଖଦଡ଼ ଖଣ୍ଡିକ ଅପର୍ତ୍ତି ଦେଇଥିଲା ଗୁରେଇକୁ, ସେ ଖଣ୍ଡିକ ବି ଚିରି ଆସିଲାଣି ।

କେତେଦିନେ ଫେର ସିଏ ପଇସା ଧରି ଯାଇ ଧନୀସାହୁ ଦୋକାନ ମୁହଁରେ ଠିଆ ହେଲା—

ଧନୀ ସାହୁ କହିଲା—ଯା, ଯା,—ଲୁଗା ନାହିଁ । ତିନିଟା ଟଙ୍କାରେ ଶାଢ଼ୀ କିଣିବ । ଅପର୍ତ୍ତି ନମ୍ର ସ୍ୱରରେ କହିଲା—ସାହୁଏ, କେତେ ଥର ଫେରେଇ ଦେଲଣି—ଘରେ ସିଅଡ଼େ ଝିଅ ନଙ୍ଗଳା—ପାଣି ମାଠିଏ ଅଣିବାକୁ ପଦାକୁ ବାହାରି ପାରୁ ନାହାନ୍ତି ।

ଧନୀ ସାହୁ ଓଲଟି ତାକୁ ଥଟ୍ଟା କରି କଅଣ ଗୁଡ଼ାଏ କହି ପକାଇଲା—

ଅପର୍ତ୍ତିର ଶିରା ପ୍ରଶିରାଗୁଡ଼ାକ ରାଗରେ ଫୁଲି ଉଠିଲା—ଆଖି ଗୁଡ଼ାକ ଜଳି ଉଠିଲା—ଏଇ ଧନୀସାହୁ—ଯୁଦ୍ଧ ଆଗରୁ ବ୍ରାହ୍ମଣୀ ସାଇ, କେଉଟ ସାଇ, ପାଇକ ସାଇ ଘର ଘର ବୁଲି ପାଟଫୁଲି, ଚୁଡ଼ି, ସୁତା, ଗନ୍ଧକପୁର ବିକୁଥିଲା । ତାର ଫେରେ ମୁହଁ ଉପରକୁ ହେଲଣି !

ଦାନ୍ତ ଚିପି, ରାଗ ବନ୍ଦ କରି ଫେରି ଆସିଲା ଅପର୍ତ୍ତି—

ଗାଁ ଗାଁ ବୁଲି ଦେଶ-ସେବକମାନେ ପ୍ରଚାର କଲେ—ସୂତା କାଟି ଲୁଗା ଅଭାବ ଦୂରକର—ନିଜ ଗୋଡ଼ରେ ନିଜେ ଠିଆ ହୁଅ—ତା ନ ହେଲେ ଦାସତ୍ୱର ବେଡ଼ିରୁ ମୁକ୍ତି ଲାଭ କରି ପାରିବ ନାହିଁ—

କେତେ କେତେ ଚାଷୀ ମୂଲିଆ ସଭା ହେଲା । କିଏ କହିଲା—'ଜମିଦାରଙ୍କୁ କର ଦିଅନି'—କିଏ କହିଲା 'ଧର୍ମଘଟ କର ।'

ଅପର୍ତ୍ତି ସବୁ ଶୁଣେ—କିନ୍ତୁ କେହି ତାର ଖାଦ୍ୟ ପୋଷାକର କାର୍ଯ୍ୟକାରୀ ସମାଧାନର ପନ୍ଥା ଦେଖାନ୍ତି ନାହିଁ । ବିଭିନ୍ନ ରାଜନୈତିକ ଦଳର ବିଭିନ୍ନ ମତବାଦ ପ୍ରଚାରିତ ହୁଏ—ଅଧାଠୁଆ ଅଳ୍ପ ଜ୍ଞାନୀ ଅପର୍ତ୍ତି ମୁଣ୍ଡରେ ସେ ସବୁ ପୂରେନି ।

ଗୁରେଇ କ୍ଲିଷ୍ଟ ଜଳଗ୍ନ ଦେହ ତାକୁ ଅହରହ ପୀଡ଼ା ଦଏ—ଦିନବେଳେ ଗୁରେଇ ତାର ନଗ୍ନ ପ୍ରାସ୍ଥ ଦେହକୁ ଲୁଡ଼ିଆ ଭିତରେ ଲୁଚେଇ ରଖେ—ସନ୍ଧ୍ୟା ହେଲେ ସେ ଯାଏ ପଡ଼ିଅଙ୍କୁ କମ୍ପା କୂଅରୁ ପାଣି ଅଣିବାକୁ ଅତି ସନ୍ତର୍ପଣରେ—

ଅପର୍ତ୍ତି କଳଭଳ ତା ସାଙ୍ଗକାର ପେଲି ହଳ କରେ—ପରସ୍ପରରେ ଅପର୍ତ୍ତି ଶୁଣିପାରେ ତା ଦେଶ ସ୍ୱାଧୀନ ହେବ—କିନ୍ତୁ ବୁଝି ପାରେନି—

ସ୍ୱାକ୍ ତାକୁ ପସ୍ତୁର କେବଳ ଏତିକି ବୁଝେଁ—ଅଉ କେତୋଟା ଦିନ ଗଲେ ଗୋରା ଲୋକେ ଅମ ଦେଶରେ ଅଉ ରହିବେନି । ଅମର ଦେଶ ଲୋକେ ଅମ ରାଇଜ ଚଳେଇବେ—କାଳାପୋଡେଇ, ଗୈରବକାର ବନ୍ଦ ହୋଇଯିବ—ଲୁଗା, କରସିନ, ଗୁଡ଼ଲ, ଶସ୍ତା ହେବ—ଲୁଅ ମିଛ ଅଉ ଦେଶରେ ରହିବନି—

ଅପର୍ତ୍ତି ଭାରି ଖୁସି ହୋଇଯାଏ ।

ଅନନ୍ଦରେ ଗୁରେଇକୁ ଯାଇଁ କହେ—"ଗୁରେଇ ଲୋ, ଅମ ଦୁଃଖ ଏଇଥର ଯିବ—ଅମ ଲୋକମାନେ ଅମକୁ ଚଳେଇବେ ଏଥର—ଗୋରା ଲୋକମାନେ କୁଆଡ଼େ ତାଙ୍କ ନିଜ ଦେଶକୁ ଗଣ୍ଠିଲି ବୁଜୁଲା ବାନ୍ଧି ପଳେଇବେ—"

ଅପର୍ତ୍ତି ଉତ୍ସୁକ ହୋଇ ଗୁହିଁ ରହେ ସେଇ ଦିନକୁ—

ସତଚାଳିଶ ମସିହା ଅଗଷ୍ଟ ପନ୍ଦର—ଉତ୍ସବ ହୁଏ—ଘରେ ଘରେ ତିରଙ୍ଗା, ଚକ୍ର-ଚିହ୍ନିତ ପତାକା ଉଡ଼େ ସ୍ୱାଧୀନ ଜୀବନର ଉଦ୍ଦାମପ୍ରବାହର ସଙ୍କେତ ଦେଇ—ସାମ୍ୟ ମୈତ୍ରୀର ସଙ୍କେତ ଦେଇ—

ଅପର୍ତ୍ତି ଗ୍ରାମରେ ବି ଖଣ୍ଡିଏ ତିରଙ୍ଗା ପତାକା ଉଡ଼େ—ଅପର୍ତ୍ତି ହସି ହସି ସେଇ ପତାକା ଅଡ଼େ ଗୁହିଁ ରହେ ଅପଲକ ଅଖିରେ—

ସେ ଯେପରି ଦେଖିପାରେ—ସେଇ ପତାକା ଭିତରେ ତା ଗୁରେଇ ଭଲ ଭଲ ଖଦମାନ ପିନ୍ଧି ହସି ହସି ତା ଅଡ଼େ ଚୃହିଁଚ—ପୁଞ୍ଜିପତି ଧନୀ ସାହୁ ହାତରେ ପଡ଼ିଚ ବେଉଁ କଳା-ପୋଡେଇ କର ଧର ପଡ଼ିବାରୁ—

ହନ ଗଣ୍ଡଗୃଲେ—ଗାନ୍ଧି ବୁଢ଼ାଙ୍କୁ ଦେଶ ଭୁଲିଯାଏ—ତାର ମହାନ୍ ଆଦର୍ଶକୁ ବି ଭୁଲିଯାଏ । ତିରଙ୍ଗୀ ପତାକାଟିର କଶ୍ରୁ ରଙ୍ଗ ବାୟୁ ସଙ୍ଘାତରେ ଫିକା ପଡ଼ିଆସେ—

ଅପର୍ଣ୍ଣି ସ୍ପଷ୍ଟ ଭାବରେ ବୁଝିପାରେନି ଦେଶର କି ପରିବର୍ତ୍ତନ ହେଲା—ଗାଁଟା ତ ଠିକ୍ ଯିମିତି ଥିଲା ସେମିତି ଅଛି—

ତା ଗୁରେଇ ତ ସେମିତି ଛିଣ୍ଡା କନା ପିନ୍ଧୁଚ—କାନସିରି, କଇଁବେଣ୍ଟ ସିଝା ଖାଉଚ—ପରିବର୍ତ୍ତନ ତେବେ ହେଲା କେଉଁଠି ? ହଳ ଛାଡ଼ିଦେଇ ଅପର୍ଣ୍ଣି ଅଣ୍ଟୁ ଉପରେ କହୁଣୀ ରଖି ହାତ ଉପରେ ବସି ଭାବେ—କିନ୍ତୁ କାହିଁ ? ପରିବର୍ତ୍ତନ ତ କେଉଁଠି ଦେଖେନି ? ଧନୀ ସାହୁର କଳାବଜାର ତ ଠିକ୍ ସେମିତି ଚାଲିଚ—ତାଙ୍କ ଗାଁ ପୋଖରୀ ଗୁଡ଼ାକରେ ତ ଦଳ ସେମିତି ଭର୍ତ୍ତି ହୋଇଚ—ମେଲେରିଆ, ହଇଜାରେ ଲୋକ ସିମିତି ତ ମରୁଚନ୍ତି—ଗୁରେଇର ଛିଣ୍ଡା କନଟା ତ ସେମିତି ଦେଖାଯାଉଚ ।

କେବଳ ଗୋଟାଏ ବିଷୟରେ ଅପର୍ଣ୍ଣି ପରିବର୍ତ୍ତନ ଲକ୍ଷ କରେ—ଦେଶ ସ୍ୱାଧୀନ ହେବା ଆଗରୁ ଯେଉଁ ଲୋକମାନେ ଏଇ ଗାଁକୁ ମାସ ଭିତରେ ଅନ୍ତତଃ ତିଥର ଆସି ସଭା ସମିତି କରି ସେମାନଙ୍କ ରାମ ରାଜ୍ୟର କଳ୍ପନାପୁରୀକୁ ନେଇ ଯାଉଥିଲେ, ସ୍ୱାଧୀନତା ପରେ ଆଉ ସେମାନେ ଦେଖାଯାଉ ନାହାନ୍ତି—ଯେଉଁ କର୍ମୀ ଜଣକ ଖାଲି ପାଦରେ ଅଣ୍ଟୁ ଉପରକୁ ମୋଟା ଖଦୀ ଖଣ୍ଡିଏ ପିନ୍ଧି, କାନ୍ଧରେ ଝୁଲିମୁଣି ଝୁଲେଇ ଏ ଗାଁରେ କେତେ ଥର ସଭା ସମିତି

କରି ଗାନ୍ଧିଙ୍କର ଅହିଂସା ନୀତି, ସରଳ ଜୀବନ ଯାପନର ଆଦର୍ଶ ପ୍ରଚାରକରି ଯାଇଛନ୍ତି ସିଏ କେବଳ ଥରେ ଏଇ ବାଟ ଦେଇ ଗୋଟିଏ ବଡ଼ ମଟର ଭିତରେ ବସି ଯାଉଥିବାର ଅପର୍ତ୍ତି ଦେଖିଛି—

ବେଦନା ଓ ନୈରାଶ୍ୟରେ ଅପର୍ତ୍ତିର ହୃଦୟତନ୍ତ୍ରୀ ଗୁଡ଼ିକ ଛିଣ୍ଡିଯିବାର ଉପକ୍ରମ କରନ୍ତି—ଗୁରେଇର ଅନାହାରକ୍ଲିଷ୍ଟ, ଉଲଗ୍ନ ଝାଉଁଳା ଦେହ ଆଡ଼େ ଚାହିଁ ତା ଆଖି ଜକେଇ ଆସେ—

ଧନେ ଧନେ ଅପର୍ତ୍ତି କହେ—ମତେ ବାହାହୋଇ କେତେ ଦୁଃଖ ପାଇଲୁ ଗୁରେଇ—

ଅଭିମାନରେ ଗୁରେଇର ଆଖି ଦୁଇଟା ଦପ୍ କରି ଜଳିଉଠେ, ଅପର୍ତ୍ତି ମୁହଁକୁ ଚାହିଁ ରୁଦ୍ଧ ଗଳାରେ କହେ—ମତେ ଯଦି କୁଆଡ଼େ ଛାଡ଼ି ଦବାକୁ ତମର ଇଚ୍ଛା ହଉଛି ଦଉନ ?

ଗୁରେଇ କହିଁ କହିଁ ହୋଇ କାନ୍ଦିଉଠେ—ଅପର୍ତ୍ତି ଏହି ଚରମ ନଗ୍ନ ଦାରିଦ୍ର୍ୟ ଭିତରେ କୋଟିନିଧି ପାଇଲାପରି ଅନୁଭବ କରେ। ଗୁରେଇର ନୁଖୁରା ଘଞ୍ଚ କେଶଗୁଚ୍ଛକୁ ଧରି ସେ ଆଦରରେ ଝାଙ୍କି ଦେଇ କହେ—ଗୁରେଇ, ତୁ କଣ ମନରେ କିଛି ଭାବୁଚୁ ?—ଗୁରେଇ କିଛି ଉତ୍ତର ନ ଦେଇ ମୁହଁ ଲୁଚେଇ ବସି ରହେ—

ଅପର୍ତ୍ତି ଭାବିବସେ—ଏଇ କେତେବର୍ଷ ଧ[illegible]ସେ ଗୁରେଇକୁ କେତେ ଆଶା ଆଶ୍ୱାସନା ନ ଦେଇଛି ? ଉଜ୍ଜ୍ୱଳ ଭବିଷ୍ୟତର କେତେ ଚିତ୍ର ତା ଆଖି ଆଗରେ ନ ଦେଖେଇଛି—ସରଳ ମନରେ ଗୁରେଇ ସେ ସବୁକୁ ବିଶ୍ୱାସ କରିଛି—

ଅପର୍ତ୍ତି ଭାବେ ତାର ଏ ଦୈନ୍ୟ ପାଇଁ ସେ ପ୍ରତିଶୋଧ ନେବ କାହା ଉପରେ ?

ଅପର୍ତ୍ତି ଠିକ୍‌କଲା ନିଜ ଦୁଃଖ ତାକୁ ନିଜେ ଘୁଚେଇବାକୁ ହେବ—

ନୈଶ ଅନ୍ଧକାର ଭିତରେ ସେ ଧନେ ଗୃଲ୍ଲ ଧନୀସାହୁ ଦୋକାନ ଅଡ଼େ—

ନିଦ ମଲମଲ ଆଖିରେ ଗୁରେଇ ଉଠି ବସି ଦେଖିଲା ଅପର୍ତ୍ତି ଦଖଣ୍ଡି ମାଇପି ପିନ୍ଧା ଖଦ ଧରି ତା ପାଖରେ ବସିଛି—କିଛି ବୁଝି ନ ପାରି ପଚାରିଲା—ଖଦ କୋଉଠୁ ଆଣିଲୁ ?

ଅପର୍ତ୍ତି ହସି ହସି କହିଲା—ଯୋଉଠୁ ଆଣିଲି—ତୁ ଗାଧୋଇ ପାଧୋଇ ପିନ୍ଧିବୁଟି ଆଗ ଏ ଖଣ୍ଡେ ବେଇଗି—ମୁଁ ଆଉ ତୋ ଅଡ଼େ ଅନେଇ ପାରୁନି—

ସନ୍ଦିଗ୍ଧ ଦୃଷ୍ଟିରେ ଗୁରେଇ ତା ଅଡ଼େ ଚାହିଁ କହିଲା—ଯୋଉଁଠୁ ଆଣିଲି କଣ ମ ? ଗୃଡ ଗୃଡ କଣ ଗୃଳ ବାଟ ଦେଇ ଗଳି ପଇଲା— ?

ଅପର୍ତ୍ତି ଇତସ୍ତତଃ କରି ଶେଷକୁ କହିଲା—ଧନୀସାହୁ ଦୋକାନରୁ ଲୁଚେଇ ନେଇ ଆଇଚି—

ଚମକିପଡ଼ି ଗୁରେଇ କହିଲା—କ'ଣ ଚୋରି ?

ହଁ ଚୋରି—କଣ ହେଇଗଲା ସେଇଠୁ ? କିଏ ନ କରୁଚି ଚୋରି ? ଧନୀସାହୁ କଳାପୋଡେଇ କରି ଟଙ୍କାକ ଜାଗାରେ ପାଞ୍ଚଟଙ୍କା ନଜରା[illegible]ସେଇଟା ·କଅଣ ଚୋରି ନୁହେଁ ? ଯୋଉ ବାବୁମାନେ ଜାଣିଶୁଣି ତାକୁ ଛାଡ଼ି ଦଉଚନ୍ତି, ସେମାନେ ସବୁ କଣ ଭଲ ଲୋକ ?

ଯୋଉ ସାହୁକାର ଆମକୁ ଖଟେଇ ଆମ ତଣ୍ଟି ଚିପି ଖଜଣା ଅସୁଲ କରୁଚି ସିଏ କଣ ? ଚୋରି ନୁହେଁ ? ଆଜି ମୁଁ ଖାଇବାକୁ ପାଉନି, ପିନ୍ଧିବାକୁ ପାଉନି—ଚୋରି କଲିତ କଣ ହେଲା ?

ଗୁରେଇ ଭୟାତୁର ଗଳାରେ କହିଲା—ଯଦି ଧରା ପଡ଼ିବୁ ? ଅପର୍ତ୍ତି ନିର୍ଭୀକ ଭାବରେ ଉତ୍ତର ଦେଲା, ଧରା ପଡ଼ିଲେ ପଡ଼ିବା—

ତା ଅଗରୁ ତୁ ଖଣ୍ଡେ ଲୁଗା ହେଲେ ପିନ୍ଧ ପକେଇଥା—ଛିଣ୍ଡାଲୁଗା ଗୁଡ଼ାକ ଏ ଅଗଣାରେ ପକେଇ ଦେ—ଆଜ ଏଇ ଶାଢ଼ୀ ଖଣ୍ଡ ପାଉଁଶ ଗଦା ଭିତରେ ନୂଚେଇ ଦେଇଥା—ଯା—ବେଇଗି ସବୁ କରିପକା—

ଗୁରେଇ ଅପର୍ତ୍ତି କହିଲା ପ୍ରକାରେ ସବୁ କରିଗଲା ଶଙ୍କିତ ଚିତ୍ତରେ—ବାରଟାବେଳକୁ ପୁଲିସ ଆସି ଅପର୍ତ୍ତିଘର ଖାନତଲାସ କଲା—

ଗୁରେଇ ନୂଆ ଶାଢ଼ୀଟା ପିନ୍ଧି ଲଜ୍ଜାବନତ ମୁଖରେ ଠିଆ ହେଲା ପୁଲିସ ସାମନାରେ—

ଗୁରେଇ ପିନ୍ଧା ଶାଢ଼ୀକୁ ଦେଖେଇ ପୁଲିସ ପଚାରିଲା ଅପର୍ତ୍ତିକୁ, ଏ ଶାଢ଼ୀଟା କୋଉଠୁ ପାଇଲୁ ?

ଟିକିଏ ବି ଶଙ୍କି ନ ଯାଇ ଅପର୍ତ୍ତି ଉତ୍ତର ଦେଲା—କିଣିଛି— ପୁଲିସ ପଚାରିଲା—କୋଉଠୁ କିଣିଲୁ ?

ହେଇ ସିଏ ଆପଣଙ୍କ ସାଥିରେ ଅଇଚି—ଧନୀ ସାହୁ—କିଣିଚି ଏହି ରବିବାର ଦିନ—

ଧନୀସାହୁ ଆଡ଼େ ଚାହିଁ ପୁଲିସ୍ ପଚାରିଲା—"କିଓ ବିକିଚ" ?

ଆଖି ଦ'ଟା ବଡ଼ ବଡ଼ କରି ହାତଯୋଡ଼ି ଧନୀସାହୁ କହିଲା— ନାହିଁ ଆଜ୍ଞା ! ଖାତା ଦେଖନ୍ତୁ ତା ଦସ୍ତଖତ ତ ଥିବ—

ଅପର୍ତ୍ତି ଗଳା ଖଙ୍କାରି କହିଲା—ଦସ୍ତଖତ୍ ଆସିବ କୋଉଁଠୁ ସାହୁଏ ? ସେତ ବାରଟାବେଳେ ଚୋରଙ୍କ ଭଳି ବାଡ଼ି ପଟେ ତ ଲୁଗା ବିକିବ କଳାପୋତେଇରେ—ଅଢ଼େଇଟଙ୍କାର ଶାଢ଼ୀ ଖଣ୍ଡେକୁ ତ ମୋଠୁ ପାଞ୍ଚଟଙ୍କା ସୁକାଏ ନେଲା—ଅନ୍ଧାରିଆ ବେଉସା—ଅବକା ମତେ ଚୋର କରିବାକୁ ବସିଚ କଅଣ କିଏ ସାହୁ ?

ପୁଲିସ ଅଡ଼େ ଚାହିଁ ପଚାରିଲା—ଅଜ୍ଞା ମୁଁ ଚୋରି କି ନୁହେଁ ପଚାରନ୍ତୁ ସବୁ ଗାଁ ବାଲାଙ୍କୁ—ଆଜି ସେଇମାନଙ୍କୁ ପଚାରନ୍ତୁ ଧନୀସାହୁ କଳାପୋତେଇରେ ଲୁଗା ବିକେ କି ନାହିଁ—ତାଙ୍କର ଭିତରୁ ବି କେତେ କଣିଥିବେ ।

ପୁଲିସ ଚାହିଁଲା ଗାଁ ଲୋକଙ୍କ ଅଡ଼େ—ସମସ୍ତେ ନୀରବ ରହିଲେ—ପୁଲିସ ଧନୀସାହୁଙ୍କୁ ପଚାରିଲା—ତମର କେତେ ଯୋଡ଼ା ଲୁଗା ଚୋରି ଯାଇଛି ?

ଧନୀସାହୁ ଥଙ୍ଗେଇ ଥଙ୍ଗେଇ ମନେ ପକେଇବା ଭଳି ଆଖି ଉପରକୁ କରି କହିଲା—ଅଜ୍ଞା ଦଶ କି ପନ୍ଦର ଯୋଡ଼ା ।

ଧମକ ଦେଇ ସବ୍‌ଇନ୍‌ସପେକ୍ଟର କହିଲେ—ଠିକ୍ କେଇଟା ଜାଣିନା ? କଣ୍ଟ୍ରୋଲ ଦୋକାନ ତମର—ଲୁଗା ହିସାବ ଠିକ୍ ରଖିନ ?

ଧନୀସାହୁ ପାଟି ଘାଲୁ ପାଲୁ କଲା—ପୁଲିସ ଅପର୍ତ୍ତିର ଘରବାଡ଼ି, ସବୁ ଟିକି ନିଖି କରି ଖୋଜି କେଉଁଠି କିଛି ନ ପାଇ ଧନୀସାହୁଙ୍କୁ ଚାହିଁ କହିଲେ—ଇଆଡ଼େ ଚୋରିଯିବା ବାହାନା ଦେଖେଇ ସିଆଡ଼େ କଳାପୋତେଇ ଚାଲିଛି ନା—ଆସ ତମ ଦୋକାନ ଖାନତଲାସ କରିବି—ତମେ ତ ଅଚ୍ଛା ଲୋକ ।

ପୁଲିସ ଆଗେଇ ଚାଲିଲା—ପଛେ ପଛେ ଧନୀସାହୁ ଚୋରଙ୍କ ଭଳି ଥରି ଥରି ହାତ ଯୋଡ଼ି ଚାଲିଲା—

ଅପର୍ତ୍ତି ଚାହିଁଲା ଗୁରେଇ ଅଡ଼େ ହସି ହସି—

ଗୁରେଇ ପଚାରିଲା ଆଶ୍ଚର୍ଯ୍ୟ ହୋଇ—ତମେ ଏତେ ଗୁଡ଼ାଏ ମିଛ କହିଗଲ ପୁଲିସ ଆଗରେ ? ମୋ ଛାତି ଥରୁଥିଲା ଖାଲି ।

ଅପର୍ତ୍ତି କହିଲା—ମିଛ କ'ଣ ? ସେ କ'ଣ ସତେ କଳା-ପୋତେଇ କରୁନାହିଁ ?

ଗୁରେଇ ବ୍ୟସ୍ତ ହୋଇ କହି ଉଠିଲା—ନାହିଁ—ନାହିଁ—ଆମେ ଶୁଖି ଶୁଖି ମରିବା ପଛେ—ତମେ ଏମିତି କର ନାହିଁ—ମୋ ଛାତି ଧଡ଼ ଧଡ଼ ହଉଚି—

ଅପର୍ତ୍ତି କିଛି ସମୟ ଚୁପ୍ ହୋଇ ବସି ରହିଲା—ତାପରେ ଆଖି ଛଳ ଛଳ କରି ବ୍ୟଥାତୁର କଣ୍ଠରେ କହିଲା—ଗୁରେଇ—ଚୋରି କଅଣ ମୁଁ ସତରେ କଲି ? ବଡ଼ଲୋକମାନେ ସଜିକରେ ହଜାର ହଜାର ଚୋରି କରୁଛନ୍ତି—ଆଜ ଆମେ—ଦି’ଖଣ୍ଡ ଲୁଗା କି ଆଣି ପାରିବାନି ଖାଲି ଆମର ମାନମହତ ରଖିବା ପାଇଁ ?

ସମସ୍ତେ କହିଲେ, ଆମ ଦେଶ ସ୍ୱାଧୀନ ହେଲେ ଆମ ଦୁଃଖ ପାଣି ପରି ବୋହିଯିବ—କାହିଁ କାହିଁ ?

ଗୁରେଇ ଅପର୍ତ୍ତି କାନରେ ହାତରଖି କହିଲା, "ନାହିଁ, ତମେ ମୋ ମୁଣ୍ଡ ଖାଅ—ଯିଏ ଯାହା କରୁ—ତମେ ସେ ଭଳି କାମ ଆଉ କରିବନି । ଦୁଃଖ ଆମର ଦିନେ ଘୁଞ୍ଚିବ—ସବୁଦିନ କଣ ଆଉ ଏକା ପରି ଯାଉଥିବ ?

ଅପର୍ତ୍ତି ଗୁରେଇ ଆଡ଼େ ଚାହିଁ କହିଲା—ଗୁରେଇ, ଭଲଲୋକ ହେଲେ ଦୁଃଖ ଭୋଗିବାକୁ ହୁଏ—

ଗୁରେଇ କହିଲା—ହଉ ପଛେ ।



# ଷଡ଼୍‌ଯନ୍ତ୍ର

ଭୀଷଣ ଷଡ଼୍‌ଯନ୍ତ୍ର—

ରଜା ରଜା ଭିତରେ ନୁହେଁ, ପ୍ରଜା ରଜା ବିରୁଦ୍ଧରେ ନୁହେଁ—ଭାଇ ଭାଇ ସାଙ୍ଗରେ ନୁହେଁ—ତଥାପି ଗୋଟାଏ ଷଡ଼୍‌ଯନ୍ତ୍ର—ଆକାଶ ଆକାଶ ସାଙ୍ଗରେ—ପାଣି ପାଣି ଭିତରେ—ପବନ ପବନ ବିରୁଦ୍ଧରେ ଯେମିତ ଚଳେଇଚନ୍ତି—ଭୀଷଣ ଷଡ଼୍‌ଯନ୍ତ୍ର ।

ଭୀମା ଆଜି ତିନି ଗୁର ଥର ଠେଙ୍ଗାରେ ପକାଇଲା ପାହାର ଉପରେ ପାହାର । ଫଡ଼ା ଫଡ଼ା ହୋଇ ଅଠିଲା ମାଟି ଫାଟିପଡ଼ିଲା । ପାତାଳ ଫୁଟିବ । ପାଣି ବାହାରିବ । ସମସ୍ତେ ପିଇବେ । ଭୀଷ୍ମ ଶରଶଯ୍ୟା କର[illegible] । ଭୀମା·ନାହାକ ଆଜି ସବ୍ୟସାଚୀ ସାଜିଛି । ଗାଁଟା ଖାଁଖାଁ । ଶୋଷ ଗୋଡ଼େଇଚି; ତିନିକୋଶ ଦୂରରୁ ପିଇବା ପାଣିଆଣି ଅଣ୍ଟା କହୁଣୀ ଧରିଲଣି ।

ମଣି ମହାନ୍ତି ଛତା ମୁଣ୍ଡେଇ, ଗାନ୍ଧ ମୁଣାଟାଏ ଝୁଲେଇ, ବାଇ ମହାନ୍ତି ପାଞ୍ଜି ଯାକି, ସେଇବାଟେ ଗଲେ ହାଙ୍କଟାଏ ମାରି—କହିଲେ, ହାଣ ହାଣ—ହଇରେ, ପରମାଟି ବୁହା—ଖୋଳ ଖୋଳ—ଜମିଦାରଅଣୀ କଟେଇରେ ତେଲ ଢାଳିଲଣି । ତମେ ପୋଖରୀ ଖୋଳିବ···ସେ ମାଛ ଖାଇବ ।

ଷଡ଼୍‌ଯନ୍ତ୍ର ଷଡ଼୍‌ଯନ୍ତ୍ର । ଚାରିଆଡ଼େ ଷଡ଼୍‌ଯନ୍ତ୍ର । ଭୀମା ତା ବୃଷାଳିଆ ବାହାକୁ ଚାହିଁଲା । ଏଥର ତାକୁ ଜଳଜଳ ହୋଇ ଦିଶିଲା—ଷଡ଼୍‌ଯନ୍ତ୍ର, ଏଇ ବାହୁ ବିରୁଦ୍ଧରେ—ବାହୁବଳ ବିରୁଦ୍ଧରେ—ତାର ଏଇ ବଳିଲା କୁଳିଲା ଛେଚରା ଟିଙ୍କିଲାପରି ପେଶି ଗୁଡ଼ାକ ବିରୁଦ୍ଧରେ ଷଡ଼୍‌ଯନ୍ତ୍ର ଚାଲିଛି । ସେ ଠେଙ୍ଗାଟା ପଟକେଇଦେଇ ମଥା ଉପର ସୂର୍ଯ୍ୟ ଦେବତାକୁ ଚାହିଁଲା । ଯେ ଦାନବ୍ରତ କରୁଛି, ସେଇ ଜାଣେ ।

ମଣି ମହାନ୍ତି ଟାଉଟର । ତା କଥାରେ କି ବିଶ୍ୱାସ ! ଅଗଣି କହିଲା, "ଜମିଦାରି ଏ ଖଣ୍ଡିକ ଛାଡ଼ିଦବ ଯେ ।"

ମଣି ମହାନ୍ତି ପରା ରାଜନୀତିରେ ମିଶିଛି—ନେତା ହେଉଛି—ସେ କଣ ମିଛ କହିବ ।

"ଜମିଦାରି କଣ ଅଲପି ରାଜନୀତିଆ କି ?" ପୂନେଇ ଦେହୁରୀ କହିଲା । ଜଗା ଭେଣ୍ଡିଆ କହିଲା—"ମୁଁ ଖୋଲିବ ନାହିଁ—ଜମିଦାରି ଏ ଖଣ୍ଡ ସର୍ବସାଧାରଣ ବୋଲି ଲେଖିଦେଇ । କାଲି ରଜା ପରଜାଙ୍କର ଲାଗିବ; ସେତେବେଳକୁ ପାଣି ବନ୍ଦକରି ଦେଉଥିବ । ସେ କଥା ପଟିବ ନାହିଁ । ହକ୍ କଥାରେ ଠକ୍ ଠକ୍ ।"

ମଣି ମହାନ୍ତି ଫେରପଡ଼ି କହିଲା—"ଅରେ ଜମିଦାର ମାରୁଛି ! ଜମିଦାରୀ ଉଠିଲାଣି ! ଜମି ଜମି ! ଏ ଜମିସବୁ [illegible] ଜମିଦାରର ।"

"ତା ଅଜ ଜମିଦାରୀ ଗଲା ବୋଲି ଜମି ଯିବନା କୁଆଡ଼େ, ବାପ ଗୋସାପଙ୍କ ଭିଟା ।" ଭୀମା କହିଲା ।

"ଏଁ—ଅଇଲା ଏ ସତ୍ୟବନ୍ତ ପୁରୁଷ !" ମୁହଁଟାକୁ ନେସିଡ଼ ମଣି ପଛକୁ ପାହୁଣ୍ଡେ ଦଣ ଉଡ଼ିଅସି କହିଲା—"ହଇରେ ! ଯାଙ୍କ 'ସତାନ୍ତୁଇ ସାତ ପୁରୁଷରେ' ଜମି ଭାଙ୍ଗି ପଡ଼ିଆ ଉଠିଆ କରିଥିଲେ ? ଜମିଦାର—ଜମିଦାରୀ ଅଛି । ଅରେ ତମର ଆମରଠୁ, ରାଣ୍ଡି ଖଣ୍ଡି ଠଉଁ ନେଇ ଜମିଦାର । ଜମିଦାର ! କି ଜମିଦାର ହୋ ? ଲଙ୍ଗଳ

ଯାଉ ଭୂଇଁ ତାର । ନେତାଗିରି କରିବା ଲୋକେ ଅଚ୍ଛା କଥା ଶିଖାଇ ଦେଉଛନ୍ତି ।'' ମଣି ମହାନ୍ତି ଗର୍ଜି ଉଠିଲା ।

ମଣି ମହାନ୍ତି ପୁଅ ବି.ଏ ପାସ୍ । ସେ କୁଆଡ଼େ ଗୋଟାଏ ଦଳରେ ମିଶିଥିଲା । ସରକାର ତାକୁ ଚାକିରି ଦେବା ଧନରୁ ତା କାମ ତା ବାପ ତୁଲାଉଛି । ପୁଅ ଚାକିରି ପାଇବା ଯାଏଁ ବାପ ନାନା ରଙ୍ଗ ଢଙ୍ଗର ବେଶ ପକାଇ ଟାଉଟର, କଳାପୋଡେଇ କରୁଥିଲା । ହାକିମଙ୍କ ପାଖରେ ବସି, ଗାଁରେ ମକଦ୍ଦମା ଲେଇ ହାକିମଙ୍କଠୁଁ ଡିଗ୍ରୀ ଅଣିବ ବୋଲି କହି ଦୁଇପକ୍ଷରୁ ବାଁ ଡାହାଣ ମାରୁଥିଲା । ଯାହାର ଡିଗ୍ରୀ ହୁଏ ତା ପାଖରେ ଯାଇ ଛାଣ ଫୁଲେଇ କହେ—ଦେଖିଲୁ—ହାକିମ କିମିତି ମୋ କଥା ଶୁଣେ । ଯାହାର ହାର ହୁଏ, ତାକୁ କହେ—ଟଙ୍କା ଦେବାରେ ହେଳା କଲୁ, ଭଲ କଞ୍ଜୁସ୍ଟା, ଅଣ୍ଟିରୁ ଟଙ୍କା ତ ବାହାରିଲା ନି—ମୁଁ କଣ କରିବି ।

ତେଣେ ଅଜ ଅଜ ବାବୁମାନଙ୍କୁ ଖାଇବାକୁ ପିଇବାକୁ ଦେଇ ଷ୍ଟ୍ରମିଟ୍ ଅଣି ଗାଁରେ ବରାବର କଳାପୋଡେଇ ଚଳାଏ । ଏସବୁ ପାପରୁ ରକ୍ଷାକରେ ତାକୁ ଗୋଟାଏ ପୁଣ୍ୟବାଚକ—'ସରକାରଙ୍କ ଲୋକ ବୋଲି ସେ କହି ହୁଏ ।'

ଏମିତି କଳ୍କ କରି ସେ ପୁଅକୁ ପାଠ ପଢ଼େଇ ଚାକିରି ବି କରେଇ ଦେଲା । ପୁଅ ବିରୋଧୀଦଳ ସାଙ୍ଗେ ମିଶେ ବୋଲି ପୁଲିସି ରିପୋର୍ଟ ଦେଖି ଅଫିସର କହିଲେ—ଚାକିରି ନ ପାଇଲେ ସେଟା ପୁରା ପଥହରା ହୋଇଯିବ । ଫଳରେ ଚାକିରି ମିଳିଲା ।

ମଣି ମହାନ୍ତିର ଅଜ ଚିନ୍ତା କଣ । ଜମି ଦଣ ମାଣ ସେ ଯେଉଁ ଚାଷିଙ୍କ ଜାଲିଅତରେ କରିଛି—ସେତକ ଗଲେ ବି ଚିନ୍ତା ନାହିଁ । ପୁଅତ ଚାକିରି କରୁଛି । କ୍ୟା ପରୁଆ । ଏଥର ଜମିଦାରକୁ

ଦେଖିନବ । ଦେଖେଇ ଦେବ, ନେତାଙ୍କ ବେକରେ କଏ ଅଗ ଫୁଲମାଳ ଦେବ—ତାଙ୍କ ଦଳ ପାଇଁ ସଭ୍ୟ କଏ ବେଶି କରି ଦେବ । ଜମିଦାର ଘର ଗୁମାସ୍ତା ମଣି ମହାନ୍ତି ଅଜ୍ଞ ମୂନିବଙ୍କୁ ବଳି ଯିବାକୁ ବସିଛୁ । ଜମିଦାର ଘର ଖାଇବାକୁ ନ ପାଇଲେ ମଣି ମହାନ୍ତିର ପେଟ ପୂରିବଟେ । ଅକର୍ମା ଜମିଦାର—ନା ହଳ କରି ପାରିବେ—ନା କଳାପୋଡେଇବା ସାହସ ଅଛୁ !

ମଣି ମହାନ୍ତି ଏଣେ ପ୍ରଜାଙ୍କୁ ଡରେଇ ଦେଇ ତେଣେ ଜମିଦାରଙ୍କୁ ଯାଇ କହିଲା—"କଣ କହିବି ଅଜ୍ଞା ! ଅପଣ ପୋଖରୀ ଖୋଲ ପାଣି ପିଇବା ପାଇଁ କହିଲେ—ତେଣେ ପ୍ରଜାଏ ମେଣ୍ଟ ବାନ୍ଧିଲେଣି । ପୋଖରୀଟା ସବ ସାଧାରଣଙ୍କର ବୋଲି ଲେଖେଇ ନ ଦେଲେ ସେମାନେ କଣ ନା କଣ କରିବେ ।"

ଜମିଦାର ରାଗରେ ନିଆଁ ବାଣ । ସଙ୍ଗେ ସଙ୍ଗେ ହୁକୁମ ହେଲା—ପୋଖରୀ ଖୋଲା ବନ୍ଦ ।

ସେ ଦିନ ରାତିରେ ଗାଁରେ ପଞ୍ଚାୟତ ବସିଲା । ସାର ହେଲା ଜମିଦାର ଘର ମୂଲ ବନ୍ଦ । କେହି ଜମି ଚଷିବେ ନାହିଁ—ଘର ଘେରିବେ ନାହିଁ । ଗାଁ ମାଇପେ, ଘଣ୍ଡି ଖଣ୍ଡି ଧାନ କୁଟିବେ ନାହିଁ । ଭୀମ ହେଲା ମୁଣ୍ଡିଆଳ ।

"ଚିନ୍ତା ନାହିଁ ମାଲିକ—ମୁଁ ତାର ବାଟ କରିବି—ଏଗୁଡ଼ାକ କବଦ ହେଇଯିବେ ।" କହି ଉଠିଲା ମଣି ମହାନ୍ତି । "ସରକାର ଅଧେ ଟଙ୍କା ଦେବେ—ଧାନ କଳଟାଏ ପକାନ୍ତୁ । ବହୁତ ଲାଭ । ଗାଁ ଗାଁରୁ ଲୋକେ ଶସ୍ତା ସୁବିଧା ପାଇ କୁଟେଇ ନେବେ ।"

"ଜମି ଯଦି ନ ଚଷନ୍ତି ଖାଇବା କଣ ?"

"ପଡ଼ିଆଜ ଜମି ପଡ଼ିଆ । ଧାନକୁଟା ପକାଇବା ବାଲାଙ୍କଠୁଁ ମୁଠେ ମୁଠେ ଗୁଣ୍ଡଳ ଜଣକା ବନ୍ଧି ନେଲେ ଆପଣଙ୍କ କୁଟୁମ୍ବ ଭଳି ଦଶଟା କୁଟୁମ୍ବ ଚଳିବେ ।"

"ବନ୍ଧି ଯଦି ନ ଦିଅନ୍ତି ।"

"ଆଜ୍ଞା—ନ ଦେଇ ଯିବେ କୁଆଡ଼େ ? ଧାନ ତ କୁଟିବେ, ଅଲପୁଅମିଟା ଗୋଟାଏ ଅମଳ । ସେ କଣା ଦମ୍ଭିଲା ପେଣୀକ ପାଣି ଭରି ମନକୁ ବ ଗୋଲମ କରିଦବ । ଚିନ୍ତା କରନ୍ତୁ ନାହିଁ । ଦିନାକେତେ ପରେ ଆପଣଙ୍କ ଗୋଡ଼ ଧରିବେ—ନ ହେଲେ ଯେ ଅଠା ଠିକ୍ । ତେଣେ ଗୃହ କରନ୍ତୁ କେତେ କରିବେ । ଧାନକୁଟା ହେଲେ ତ ଭାତ ଖାଇବେ ?"

"ଢିଙ୍କି କଣ ଉଭେଇଯିବ ଦେଶରୁ ?"

"ହା—ହା—ହା ଢିଙ୍କି ? ଢିଙ୍କିର ଡେଣା କାଟି ଦେବା । ରାବଣ ଜଟାୟୁର ପର କାଟି ଦେଲା ପରି, ଆଜ୍ଞା ! ଯଦି ଢିଙ୍କି ତଳେ ପଡ଼ି ଛଟ ପଟ ହୋଇ ନ ମରନ୍ତି ତେବେ ମୋ ନା ମଣି ମାହାନ୍ତି ନୁହେଁ ।"

"ହେଲେ ଜମିଗୁଡ଼ାକ ପଡ଼ିଆ ରହିବ—"

"ଆଜ୍ଞା ! ଜମି ପଡ଼ିଆ ରହିବ ? ଯିଏ ଜମି ଚଷିବ ତାର ଧାନକୁଟା ହବ । ନାଇଁ ତ ନାଇଁ । ଦେଖିବା ଏମାନେ ଯିବେ କୁଆଡ଼େ ।"

"ଧାନ ହେଲେ ତ କୁଟା ହବ ।"

"ହୁଁ—ଧାନ ହବନି ? ମୁଲିଆ ଚଷିବେ ନାହିଁ । କିଛି ଚିନ୍ତା ନାହିଁ । ଦରଖାସ୍ତ କର ସରକାରଙ୍କୁ କଳ ଲଙ୍ଗଳ—କଳ ଲଙ୍ଗଳ । ମନ୍ତ୍ରୀମାନେ ତ ମୋ ହାତରେ । ନଇଲେ ଭୋଟ ବେଳକୁ ଦେଖିନେବା । ପଇଲେ କିଛି ଟଙ୍କା ହାତରୁ ଦବାକୁ ହବ ଏଇକା ।"

"କେତେ ଯାଏ ?"

"ଏଇ ଧରନ୍ତୁ କୋଡ଼ିଏ ପଚାଶ ହଜାର ।"

"ଏତେ ଟଙ୍କା କୁଆଡ଼ୁ ଆସିବ ?"

"ଟଙ୍କା କଣ ପାଣିରେ ପଡ଼ୁଛି ? ଗହଣା ବନ୍ଧକ ଦିଅନ୍ତୁ । ଜମିଦାରୀ ନେଇ ସରକାର କ୍ଷତିପୂରଣ ଦେବେ । ଆଉ ପୁଣି ପଚୁଆ କଣ । ଏ ଗୁଡ଼ାକ ବାହୁବଳ ଦେଖାଉଛନ୍ତି । ଅଚ୍ଛା, ଗୋଟି ଗୋଟିକୁ ନାକପା, ନିଷ୍କର୍ମା ନ କରିଛି ତ ମୋ ନା ମଣି ମହାନ୍ତି ନୁହେଁ ।"

× × × ×

ଭୀମ ନାହାକ ଦେଖିଲା ଧଡ଼ ଧଡ଼ ହୋଇ ଧାନକୁଟା କଳ ଚାଲିଛି—ଫଡ଼ ଫଡ଼ ଫଡ଼ ହୋଇ ଟ୍ରେକ୍‌ଟର ହଳ ଲଙ୍ଗଳ ଚାଲିଛି ।

ସେ ତା ପେଷିକୁ ଚାହିଁଲା । କିଏ ଯିମିତି ତା ଉପରକୁ ମନ୍ଦ ପାଣି ପକାଇ ଦେଇଛି । ଫଣା ତୋଳି ଯଉଁ ଫଣିଟା ଫଁ ଫଁ ହେଉଥିଲା, ସେ କୋଚିଆ ଭଳି ପଡ଼ି ରହିଛି ।

ଜମିଦାର ଘର ଭିତିଟା ଧାନକୁଟା କଳ ବସିଲଣି । ଉଦ୍ଧ୍ୟମନ ମନ୍ତ୍ରୀ ନିଜେ କଳ ପ୍ରତିଷ୍ଠା ଉତ୍ସବରେ ପୁରୋଧା ହୋଇ ଉଦ୍‌ଘାଟନ କରି ଯାଇଛନ୍ତି ।

ଜମିରେ ଟ୍ରାକଟର ଚାଲିଛି । ସିନ୍ଧ୍ରି କାରଖାନାରୁ ଆସିଛି ଖତ । ଗାଁରୁ ଗୋରୁଗୁଡ଼ାକ କଂସେଇଖାନାକୁ ଚାଲାଣ ହେଉଛନ୍ତି । ଭୀମା ଚାହିଁଛି ।

ମଣି ମହାନ୍ତି ହୋଇଛି ଆମ ଜମିଦାର । ଏବକାର କଳ ମାଲିକ ଶ୍ରୀମନ୍ତ ଚୌଧୁରୀଙ୍କ ଜେନେରେଲ୍ ମ୍ୟାନେଜର । ମଣି ମହାନ୍ତି ପୁଅ ଶୋଷୋ ପ୍ରଗନାର ଅଞ୍ଚଳ ଅଧିକାରୀ । ଶ୍ରୀମନ୍ତ ଚୌଧୁରୀଙ୍କର

ପକ୍ଷାଘାତ ରୋଗ । ଅଳ୍ପ ଧନ କେଉଁଟା । ତାଙ୍କ ପୁଅ ଅଥବା । ହେଲେ ତାର କି ଚିନ୍ତା—ତିନି ତିନିଟା କଲ ।

ଭୀମା ନାହାକ ତା ଚାରିପାଖକୁ ଚାହିଁଲା । ଗାଁର ଚାରିପାଖ ଚାରିଟା ଖଣ୍ଡିଅଛି । ଭରସା କେହି ନାହିଁ । ଛାତି ଥରି ଉଠିଲା । ତା ହାତଗୋଡ଼ ଅବଶ ହୋଇ ପଡ଼ୁଛି । ସେ ବାରିବାର ଚାହୁଁଛି— ତାର ସେ ବଳାଲ ଦେହଟା ଗଲା କୁଆଡ଼େ ? ଷଡ଼ଯନ୍ତ୍ର, ଷଡ଼ଯନ୍ତ୍ର । ଭୀମା ଚାହିଁଲା ସେଇ ବାଟକୁ; ସପନା ବୋଉ ଯାଉଁବାଟେ ଯାଇଛି । କୁଟି କାଣ୍ଡି ଖାଉଥିଲା ସେ । ଧାନକୁଟା କଳ ହେଲାଦିନଠୁ ଅଳ୍ପ କାଏ କୁଟା ଦାବ । ବୁଢ଼ୀ ସପନା ବୋଉ ସିଧା ଚିକଟ କାଟିଲା ମଶାଣିକି । ସେ କିନ୍ତୁ ମରିବାକୁ ଚାହେ ନାହିଁ—ନା ସେ କେବେ ମରିବ ନାହିଁ । ପଛକେ ଏ ଷଡ଼ଯନ୍ତ୍ର ଅଗରେ ସେ ମୁଣ୍ଡ ନଇଁଦେବ, ସେ ଭଲ ।

ପୁଣି ଥରେ ମଶାଣି ଉପରେ ତା ଆଖି ପଡ଼ିଲା । ଏ ମରଣଟା ବଡ଼ ଅପମାନିଆ ମନେ ହେଲା । ତା ଦେହ ଶୀତେଇ ପଡ଼ିଲା । ସେ ଘୁଷୁରି ଘୁଷୁରି ଯାଇ ମଣି ମହାନ୍ତି ଅଗରେ ଲମ୍ବ ହୋଇ ପଡ଼ିଯାଇ କହିଲା—"ଏ ଜୀବନଟାକୁ ରଖ ମହାପ୍ରଭୁ, ନଇଲେ ଗଲା । ଖଣ୍ଡେ ଚାକିରି ।"



# ଗୋପୀସାହୁର ଦୋକାନ

ସଡ଼କ ପାଖରେ ସେଇ ଅତି ପୁରୁଣା ଝଙ୍କାଳିଆ ବରଗଛଟା ସେହିପରି ଛିଡ଼ା ହୋଇ ରହିଛି କେଜାଣି ଯୁଗ ଯୁଗ ଧରି । ଗଛଟିର ମୂଳଟି କାଳର କରାଳ କବଳରେ କେଉଁ ଦିନୁ କ୍ଷୟ ପ୍ରାପ୍ତ ହୋଇ ଗଲାଣି, ତାର ଠିକଣା ନାହିଁ । କିନ୍ତୁ ଗଛଟିକୁ ଏତେ ଦିନଯାଏ ବଞ୍ଚାଇ ରଖିଛି ତାର ଶୁଭ୍ର ଛଅଟି ବଡ଼ ମୋଟା ମୋଟା ଓହଳ— ଯାହା ମାଟି ଭିତରେ ପ୍ରବେଶ କରି ମୂଳର କାର୍ଯ୍ୟ ଚଳାଇ ନେଉଛି ।

ଗଛଟି ତାର ଜନ୍ମଠାରୁ ଏତେ ଦିନଯାଏ ଦେଖି ଆସୁଛି ଦୁନିଆର କେତେ ଉତ୍ଥାନ ପତନ, କେତେ ପରିବର୍ତ୍ତନ । ଯେତେବେଳେ ତାର ଜନ୍ମ ହୋଇଥିଲା, ସେତେବେଳେ ଏଠାରେ ନ ଥିଲା ଏପରି ପକ୍କା ସଡ଼କ । କଚ୍ଚା ସଡ଼କଟିଏ ବି ନ ଥିଲା । କେବଳ ଗୋଟିଏ ବଙ୍କା ବଙ୍କା ଗାଉଁଲି ଚଲା ରାସ୍ତା ଏହି ଅଞ୍ଚଳରେ ଚାଲି ଯାଇଥିଲା କେଉଁ ସୁଦୂର ଗ୍ରାମକୁ । ସେତେବେଳେ ପଥିକମାନଙ୍କର ଶ୍ରମ ନିବାରଣ ପାଇଁ କେଉଁ ମୁକ୍ତିପ୍ରୟାସୀ ସନାତନୀ ଏଇ ବଟ ବୃକ୍ଷଟିର ବୀଜ ରୋପଣ କରିଥିଲା ସେ ସ୍ଥାନରେ । ଏ ବଟ ବୃକ୍ଷଟି ରୋପଣ କରି ସେଇ ସନାତନୀଟିର ମୁକ୍ତି ହେଲା କି ନାହିଁ ଜଣା ନାହିଁ । ହୁଏତ ଆଜିକାଲିର ନବ୍ୟ ସଭ୍ୟ ଯୁବକଯୁବତୀ

ତାର ଏପରି କୁଳସ୍ପର୍ଶୀ ଛାୟା ଦେଖି ହସି ଅସ୍ଥିର ହେବେ । କିନ୍ତୁ ତାର କାର୍ଯ୍ୟଟି ଯେ ଥିଲା ଲୋକ ସେବାର ପରମ ଆଦର୍ଶ, ଏଥିରେ କୌଣସି ସନ୍ଦେହ ନାହିଁ । ସେ ଯାହାହେଉ ଗଛଟି ଅଦ୍ୟାବଧି ଛିଡ଼ା ହୋଇ ରହିଛି । କେତେ ପଥଶ୍ରାନ୍ତ ପଥିକ ତାର ମୂଳରେ ଆଶ୍ରୟ ନେଇ ବୈଶାଖର ମୁଣ୍ଡଫଟା ଖରାରୁ ଆତ୍ମରକ୍ଷା କରିଛନ୍ତି, କିଏ ହିସାବ ରଖିଛି ?

ସେଇ ବରଗଛଟି ସେଇପରି ଛିଡ଼ା ହୋଇ ଦେଖିଛି ଦୁନିଆର କେତେ ଅଭାବନୀୟ ପରିବର୍ତ୍ତନ । ସେଇ ବଙ୍କା ବଙ୍କା ଚଲା ରାସ୍ତାଟି ବଦଳରେ ସେଠାରେ ଯେତେବେଳେ ଗୋଟିଏ ଧୂଳିଆ ମାଟି ସଡ଼କ ନିର୍ମିତ ହେଲା, ସେତେବେଳେ ଶହ ଶହ ଶଗଡ଼ ସେଇ ରାସ୍ତାଦେଇ ଗଲା । ସେତେବେଳେ ମଧ୍ୟ ବୃକ୍ଷଟି ଥିଲା ଶଗଡ଼ିଆ-ମାନଙ୍କର ଏକ ବିଶ୍ରାମସ୍ଥଳୀ । ବୈଶାଖର ତତଲା ହାଞ୍ଜି ଓ ମୁଣ୍ଡଫଟା ଖରାର ଦାଉ ସମ୍ଭାଳି ନ ପାରି ଶଗଡ଼ିଆ ଯେତେବେଳେ ସେଇ ବରଗଛ ମୂଳରେ ତାର ଶଗଡ଼ ଫିଟାଇ ଦେଇ ପୋଢ଼ ବା ବଳଦ ହଳକୁ ଗଛ ଡହାଳରେ ବାନ୍ଧି ଦେଇ ଛାଇତଳେ ଗାମୁଛା ପାରି ଶୋଇପଡ଼େ, ସେତେବେଳେ ତାର ପ୍ରାଣ ଏକ ଅପୂର୍ବ ପୁଲକରେ ପୁରି ଉଠେ । ଗଛଟି ଯେ ଖାଲି ଖରା ତାପରୁ ପଥିକ, ଶଗଡ଼ିଆମାନଙ୍କୁ ରକ୍ଷା କରେ ତାହା ନୁହେଁ, ପୁଷମାସର ହାଡ଼ଭଙ୍ଗା ଶୀତର ଦାଉରୁ ମଧ୍ୟ ରକ୍ଷା କରେ । ଶୀତ ରାତିରେ ଶଗଡ଼ିଆର ହାତ ଗୋଡ଼ କୋଳି ମାରିଗଲେ ସେ ଏଇ ବରଗଛ ତଳେ ଶଗଡ଼ ଫିଟାଇ ଦେଇ ଧୂନି ଜାଳି ଦେଇ ହେଁସ ଘୋଡ଼ି ହୋଇ ଶୋଇପଡ଼େ ।

ବାଟୋଇମାନଙ୍କୁ ବିଶେଷତଃ ଶଗଡ଼ିଆମାନଙ୍କୁ ଖାଦ୍ୟ ପେୟ ଯୋଗାଇବା ପାଇଁ ବୁଢ଼ିଆ ଗୋପୀ ସାହୁ ସେହି ବରଗଛଟି ମୂଳରେ ମେଲାଇ ଥିଲା ତାର କ୍ଷୁଦ୍ର ଦୋକାନଟି । ବରଗଛର ଦର୍ଶଟି ବଡ଼

ଓହଳର ମଝିରେ ତାର ମାଟି ବାଉଁଶର ଛଅର କ୍ଷୁଦ୍ର ଦୋକାନ ଘରଟି । ଦୋକାନଟି ଯେତେବେଳେ ଆରମ୍ଭ କରିଥିଲା, ସେତେବେଳେ ଗୋପୀ ସାହୁର ବୟସ ଥିଲା ମୋଟେ କୋଡ଼ିଏ କି ପଚିଶ । ତାର ଦୋକାନ ଘରେ ଗୁଣ୍ଡଳ ପଇଡ଼ାଠୁଁ ଆରମ୍ଭ କରି ହାଣ୍ଡି, କାଠ, ତେଲ, ଲୁଣ ପର୍ଯ୍ୟନ୍ତ ସବୁ ଜିନିଷ ମହଜୁଦ ଥାଏ । ମୁଢ଼ି, ଚୂଡ଼ା ଓ ଗୁଡ଼ର ମଧ୍ୟ ଅଭାବ ନ ଥାଏ ।

ଦିନ ଦିପହରେ କିମ୍ବା ସଞ୍ଜବେଳେ ଯେଉଁ ଶଗଡ଼ିଆମାନେ ବିଶ୍ରାମ ନେବାପାଇଁ ସେଠି ଅଟକି ଯାନ୍ତି, ସେମାନେ ଗୋପୀ ସାହୁ ଦୋକାନରୁ ଗୁଣ୍ଡଳ, ପଇଡ଼ା, ହାଣ୍ଡି, କାଠ ଇତ୍ୟାଦି କିଣି ନେଇ ବରଗଛ ମୂଳରେ ଗୋଟିଏ ଗାତ ଖୋଳି ଦି ଗୁରେଟି ଚିମା ପଥର ଦେଇ ଭାତ ରାନ୍ଧି ପକାନ୍ତି । ଦିନ ଗଡ଼ିଲେ ବା ସକାଳୁ ଉଠି ପୁଣି ଯେତେବେଳେ ସେମାନେ ଶଗଡ଼ ଯୋଚି ବାହାରନ୍ତି—ଗୋପୀ ସାହୁଠାରୁ ମୁଢ଼ି, ଚୂଡ଼ା, ଗୁଡ଼ ଓ ଧୂଆଁପତ୍ର ଇତ୍ୟାଦି ନେଇ ଗାମୁଛାରେ ବାନ୍ଧି ଉପେନ୍ଦ୍ରଭଞ୍ଜ ବା କବିସୂର୍ଯ୍ୟଙ୍କର ରସରସିଆ ଗୀତ ଦିପଦ ବୋଲି ବୋଲି ବାହାରିଯାନ୍ତି । ଗୋପୀ ସାହୁର ଅଚ୍ଛା ଦି ପଇସା ଲାଭ ହୁଏ ।

ଏମିତି କେତେ ଦିନ କଟିଗଲା । ତା ପରେ ଜିଲ୍ଲା ବୋର୍ଡ଼ର କଣ୍ଟ୍ରାକ୍ଟର ଓ ଇଞ୍ଜିନିୟରମାନେ ଆସି ସେ କଚ୍ଚା ରାସ୍ତାଟିକୁ ମାପଚୁପ କଲେ । ଗୋପୀ ସାହୁ ପରୁର ବୁଝିଲା ଯେ, ସରକାର ରାସ୍ତାଟିକୁ ପକ୍‌କା କରିବେ । ଗୋପୀ ସାହୁର କପାଳ ଅଛୁର ଫିଟିଗଲା, କେତେ କୁଲି ମଜୁରିଆ ଆସି କାମରେ ଲାଗିଲେ । ଦିନାକେତେ ଗୋପୀ ସାହୁର ଭାରି ଲାଭ ହେଲା । ସେ ତାର ମାଟି କୁଡ଼ିଆଟି ଭାଙ୍ଗି ସେହି ସ୍ଥାନରେ ଇଟା ପଥରରେ ଦୁଇ ବଖରା

ଘର ତିଆରି କଲା । ଦୋକାନ ସାଙ୍ଗକୁ ଗୋଟିଏ ଗୃ'କାଫି ହୋଟେଲ ମଧ୍ୟ ଯୋଡ଼ିଦେଲା ।

ଗୋପୀର ବୟସ ହେଲଣି ସେତେବେଳେ ତିରିଶ କି ଚାଳିଶ । ଏତେ ଦିନଯାଏ ତାର କୌଣସି ଭାବନା ନ ଥିଲା । କିନ୍ତୁ ଦୋକାନର ବୃଦ୍ଧି ଓ ହାତରେ କିଛି ପଇସା ଜମିବା ପରେ ସେ ଅନୁଭବ କଲା ଗୋଟାଏ ଅଭାବ । ତାକୁ ବୋଧ ହେଲା ସତେ ଯେପରି ସାରା ଦୁନିଆଁଟା ଭିତରେ ସେ ଭାରି ଏକୁଟିଆ । ତା ପରେ ଦୋକାନରେ ସାରାଦିନ ବସି ବସି ଯେତେବେଳେ ନିଜେ ଖାଇବା ପାଇଁ ରୋଷାଇ କରି ବସେ, ବା ଖାଇ ସାରି ରାତି ଅଧରେ ଆପଣାର କ୍ଷୁଦ୍ର ଖଟଟି ଉପରେ କନ୍ଥା ଖଣ୍ଡି ପାରିଦେଇ ଶୋଇବାକୁ ଯାଏ, ସେତେବେଳେ ତାର ମନରେ ଗୋଟିଏ ଅଭାବର ତୀବ୍ର କଷାଘାତ ସେ ଅନୁଭବ କରେ । ଗୋପୀ ଭାବିଲା, ବାହାହୋଇ ବହୁଟିଏ ଘରକୁ ଆଣିଲେ ତାର ଭାରି ସୁଖ ହୁଅନ୍ତା ପରା । ହାତରେ ତ ପଇସାର ଅଭାବ ନାହିଁ, ସୁତରାଂ କନ୍ୟାର ଅଭାବ ହେଲା ନାହିଁ । ଅଳ୍ପଦିନ ଭିତରେ ଗୋଟିଏ ନୂଆ ବୋହୂ ଆସି ଗୋପୀର ନିଃସଙ୍ଗ ଜୀବନର ଅଭାବଟି ପୂରଣ କରିଦେଲା ।

ଦିନ ପରେ ଦିନ ଯାଉଣି ସୁଅପରି ବହିଗଲା । ଗୋପୀର ମନେହେଲା, ସତେ ଯେପରି ଦୁନିଆଁଟା ଗୋଟାଏ ସୁଖର ଖେଳଘର । ନୂଆ ବୋହୂଟି ପ୍ରଥମେ ପ୍ରଥମେ ଓଢ଼ଣା ଟାଣି ଦୋକାନର ଭିତର ଗମ୍ଭିରରେ ବସି ରହୁଥାଏ, କିନ୍ତୁ କ୍ରମେ କ୍ରମେ ତାର ସେ ସଲଜ୍ଜ ଭାବ କଟିଗଲା । ସେ ହେଲା ଦୋକାନର ସର୍ବମୟୀ କର୍ତ୍ତ୍ରୀ ଓ ଗୋପୀ ହେଲା ତାର ଅଜ୍ଞାବହ ଭୃତ୍ୟ ମାତ୍ର । କିନ୍ତୁ ସେଥିରେ ଗୋପୀର ମନରେ ମୋଟେ କଷ୍ଟ ହୁଏ ନାହିଁ, ବରଂ ଆନନ୍ଦାତି-ଶଯ୍ୟରେ ସେ ଅନେକ ସମୟରେ ପୁଲକିତ ହୋଇଉଠେ ।

ହାତରେ ଯାହା କିଛି ଟଙ୍କା ପଇସା ଜମା ହୁଏ, ସେତକରେ ସେ ସ୍ତ୍ରୀ ପାଇଁ ଅଣ୍ଟା ପାଟଅ, କୋଥ ନୋଲି ଇତ୍ୟାଦି ଅଳଙ୍କାର ଗଢ଼ି ପକାଏ ।

ଏହିପରି ଭାବରେ ଦି ଗୁରିବର୍ଷ ବିତିଗଲା ପରେ ଗୋପୀ ଆଜି ତା ଭାର୍ଯ୍ୟା ଉଭୟ ଅନୁଭବ କଲେ ଆଜି ଗୋଟିଏ ନୂଆ ଅଭାବ । ପିଲାଟିଏ ପାଇବା ପାଇଁ ଗୋପୀପତ୍ନୀର ଭାରି ଇଚ୍ଛାହେଲା । ସେଥିପାଇଁ ଦାନଧର୍ମ କରିବା ପାଇଁ ସେ ଗୋପୀକୁ କହିଲା । ବାକୀ ଯାହା ପଇସା କଉଡ଼ି ଜମା ଥିଲା ସେତକ ଦାନ ଧର୍ମରେ ସ୍ୱାମୀ ସ୍ତ୍ରୀ ଅକୁଣ୍ଠିତ ଚିତ୍ତରେ ଖର୍ଚ୍ଚ କରିଦେଲେ । 'ଲିଙ୍ଗୁବାବା'ଙ୍କ ମନ୍ଦିରରେ ଯାଇ କେତେଥର ପୂଜା ଅର୍ଚ୍ଚନା କଲେ । ଗାଁ ଗୋସେଇଁଙ୍କଠାରେ କେତେ ମାନସିକ କଲେ । ଶେଷରେ ଗାଁ ବାସୁଳେଇଙ୍କଠାରେ ଗୋଟାଏ କଳାବୋଦା ଓ ଯୋଡ଼ାଏ କଳା କୁକୁଡ଼ା ବଳି ଦିଅଇଲେ—ଗାଁର ଅନ୍ଧବିଶ୍ୱାସ ଅନୁସାରେ ।

ବାସୁଳେଇଙ୍କ କୃପା କଟାକ୍ଷରୁ ହେଉ ବା ବାବାଙ୍କ ମହିମାରୁ ହେଉ ଷଠୀଦେବୀ ଗୋପୀର ଭାର୍ଯ୍ୟାକୁ ବର ଦେଲେ । ଶୁଭ କ୍ଷଣରେ ଗୋପୀର ଗୋଟିଏ କନ୍ୟା ସନ୍ତାନ ଜନ୍ମ ହେଲା । ସ୍ୱାମୀ ସ୍ତ୍ରୀ ଉଭୟଙ୍କର ଆନନ୍ଦ ଉଚ୍ଛୁଳି ପଡ଼ିଲା । ନବଜାତ କନ୍ୟାଟିର ଦୀର୍ଘ ଜୀବନ କାମନାରେ ବୁଢ଼ୀ ବାସୁଳେଇଙ୍କଠାରେ ପୁଣି ଯୋଡ଼ିଏ ନିର୍ଘାହ ଧଳଗଞ୍ଚିଶୁ ବଳି ଦିଆଗଲା । ଲିଙ୍ଗୁବାବାଙ୍କଠାରେ କେତେ ପୂଜା ଅର୍ଚ୍ଚନା ହେଲା । ମହାପ୍ରଭୁଙ୍କର ଦୟାଭଣ୍ଡାର ବୋଧହୁଏ ଏଥର ଉଚ୍ଛୁଳି ପଡ଼ିଲା । ପରବର୍ଷ କାର୍ତ୍ତିକ ମାସକୁ ପୁଣି ଗୋଟିଏ କନ୍ୟା । ଏହିପରି ଭାବରେ ପାଞ୍ଚବର୍ଷରେ ପାଞ୍ଚୋଟି କନ୍ୟା ପାଇ ସାହୁଅଣି ଯେତେବେଳେ ପାଞ୍ଚୋଟିର ମା' ହେଲେ, ସେତେବେଳେ ମନ କଷ୍ଟରେ ସ୍ୱାମୀଙ୍କୁ ଡାକି କହିଲେ,—

"ହଇହେ, ବୁଧାଡା ବାପୁଡ଼ାର କଣ କଚ୍ଚା ବଚ୍ଚା ନାହିଁ, ବର୍ଷକୁ ବର୍ଷ ଏ ମାଇପିଲାଗୁଡ଼ାକ ଜନ୍ମ ଦେଉଛନ୍ତି । ଯେତେ ହେଲେ ତ ଏଗୁଡ଼ାକ ପରଘରୀ; ପୁଅ ପିଲାଟିଏ ଭଲା ହୁଅନ୍ତା ।

ସାହୁ ଦମ୍ପତୀ ପୁଣି ଅନୁଭବ କଲେ ଏକ ଅଶ୍ରାବ୍ୟ ଗୃହ-ଯନ୍ତ୍ରଣା । ପୁଅ ପିଲାଟିଏ ପାଇବା ପାଇଁ କାମନା କରି ଗୋପୀ ଏଥର ବାସୁଲେଇଙ୍କଠାରେ ଯୋଡ଼ାଏ କଳା ବୋଦା ଓ ଯୋଡ଼ାଏ କଳା ଅଣ୍ଡିରା କୁକୁଡ଼ା ବଳି ପକାଇଲା । ଠାକୁରାଣୀ ବୋଧହୁଏ ପ୍ରସନ୍ନ ହେଲେ । ପାଞ୍ଚ ଝିଅ ପରେ ସାହୁ ଦମ୍ପତୀ ଯେତେବେଳେ ପୁତ୍ର ରତ୍ନଟିଏ ଲାଭ କଲେ, ସେତେବେଳେ ସେମାନଙ୍କର ଆନନ୍ଦ କହିଲେ ନ ସରେ । ଏଥର ପୁଅର ଦୀର୍ଘଜୀବନ କାମନା କରି ଗାଁ ବାସୁଲେଇଙ୍କଠାରୁ ଆରମ୍ଭ କରି ବଡ଼ ଠାକୁରାଣୀ ଯେ ତାରତାରିଣୀ ତାଙ୍କଠେଇଁ ଗୋଟାଏ ପୋଢ଼ ଓ ଯୋଡ଼ାଏ କାଳିଆ ବୋଦା ବଳି ପକାଇଲେ ।

× × × ×

ଏହା ଭିତରେ ରାସ୍ତାକାମ ସରିଗଲାଣି । ଗୋପୀ ସାହୁର ଦୋକାନ ସାମନାର ସେଇ ଧୂଳିଆ ମାଟି ସଡ଼କଟା ଏବେ ପାଲଟି ଗଲାଣି ଗୋଟାଏ ପଥର ଗଡ଼ା ପକ୍କା ସଡ଼କ । କୁଲିଗୁଡ଼ାକ ଯେ ଯୁଆଡ଼େ ସେଠାରୁ ଚାଲିଗଲେଣି । ସୁତରାଂ ଗୋପୀ ସାହୁ ଦୋକାନର ଆୟ ବହୁତ କମିଗଲାଣି; କିନ୍ତୁ ଗୋଟାଏ ପେଟକୁ ବର୍ତ୍ତମାନ ହେଲେଣି ଅଠ ପେଟ, ତା ଉପରେ ପୁଣି ପୁଅ ଝିଅଙ୍କ ମଙ୍ଗଳ କାମନାରେ ବାର ମାସରେ ତେର ପର୍ବରେ ପୂଜା ଅର୍ଚ୍ଚନା, ବଳି ଇତ୍ୟାଦିରେ କେତେ କଣ ଖର୍ଚ୍ଚ ହୋଇଗଲାଣି; କିନ୍ତୁ ଗୋଟାଏ ନିଶାର ଝୁଙ୍କରେ ସାହୁ ଦମ୍ପତୀ ସେଥିପ୍ରତି ମୋଟେ ନଜର ଦେଇ ନ ଥିଲେ । ତେବେ ଗରାଖମାନଙ୍କଠାରୁ ଯାହା ଦିପଇସା ମିଳେ, ସେଥିରେ ଗୋପୀ

କୌଣସି ମତେ କଷ୍ଟେ ମଷ୍ଟେ ପରିବାରଟି ଚଳାଇନିଏ । କିନ୍ତୁ ଦିନ ପରେ ବଡ଼ ଝିଅ ବାହାହୋଇ ଗଲେ । ବାହାଘରକୁ ଟିକିଏ ଜାକଜମକରେ କରିବାପାଇଁ ସାହୁଅଣୀ ଜିଦ୍ ଲଗାଇଲେ । ସୁତରାଂ ଗୋପୀ ସାହୁ ବାଧ ହୋଇ ସାହୁକାର ଘରୁ କିଛି ଋଣ ଆଣି କାମଟା ଚଳେଇନେଲେ । ପାଖ ପଡ଼ୋଶୀ ଜାତଭାଇମାନଙ୍କୁ ଅଚ୍ଛା ଗ୍ରାସେ ଖାଇବାକୁ ଦେଲେ । ସମସ୍ତେ ଧନ୍ୟ ଧନ୍ୟ କଲେ ।

ଦିନେ ସକାଳ ବେଳା ଗୋପୀ ସାହୁ ବସି ଦୋକାନ ପିଣ୍ଡାରେ ଦାନ୍ତ ଘଷୁଛନ୍ତି, ଗୋଟାଏ ଘୋ ଘୋ ଶବ୍ଦ ଶୁଭିଲା । ପିଲାଗୁଡ଼ାକ ଘର ଭିତରୁ ଦାଣ୍ଡକୁ ଧାଇଁ ଆସିଲେ । ସାହୁଅଣୀ ମଧ ଘରକାମ ଛାଡ଼ି ଧାଇଁ ଆସିଲେ । ଗୋପୀ ଚାହିଁ ଦେଖିଲା— ଗୋଟାଏ କଳ ଶଗଡ଼ ଧାଇଁ ଆସୁଛି ପଁ ପଁ ପଁ କରି । କେତେ ଯାତ୍ରୀ, କୋଡ଼ିଏ କି ପଚିଶ । ଗୋପୀ ଭାବିଲା, ତା କପାଳ ଅଚେଇଲା । ଏତେ ଯାତ୍ରୀ ଏକାବେଳକେ ଯଦି ପଇସା ପଇସାକର ଜିନିଷ କିଣନ୍ତି, ତେବେ ତ ପାଞ୍ଚଅଣା କି ସାତ ଅଣାର ବିକି ହେବ ଏକା ଥରକେ । ସେଥିପାଇଁ ସାହୁ ତରତର କରି ଦୋକାନକୁ ଯିବାପାଇଁ ଉଠି ପଡ଼ିଲା । କିନ୍ତୁ କଳ ଶଗଡ଼ଟା ଯେତେବେଳେ ତାର ଦୋକାନ ପ୍ରତି ଟିକିଏ ନଜର ନ ଦେଇ ଧୂଳି ଉଡ଼ାଇ ଧାଇଁଗଲା, ସେତେବେଳେ ଅଜାଣତରେ ତାର ବକ୍ଷ ପଞ୍ଜର ଭେଦ କରି ବାହାରି ପଡ଼ିଲା ନୈରାଶ୍ୟର ଗୋଟାଏ ଦୀର୍ଘଶ୍ୱାସ ।

ଗୋପୀ ଭାବିଲା—ସକାଳଟାରୁ ଯିନା କଳଶଗଡ଼ ଧାଇଁଗଲା; କିନ୍ତୁ ଦି'ପହରର ମୁଣ୍ଡ ଫଟା ଖରାବେଳେ କିମ୍ବା ରାତି ଅନ୍ଧାରରେ ନିଶ୍ଚୟ ଏଇ ଗଛମୂଳରେ ଅଟକିବ ନେବ । ସେତେବେଳେ ନିଶ୍ଚୟ ତାର ହାଣ୍ଡି, କାଠ, ଗୁଡ଼ଜଳ କେତେ ବିକ୍ରୟ ହେବ । କିନ୍ତୁ ଦ୍ୱିପ୍ରହରେ ପୁଣି ଯେଉଁ କଳଶଗଡ଼ ଆସିଲା ସେଟା ଏ ମୁଣ୍ଡଫଟା

ଖରକୁ ଖାତର ନ କରି, ଗୋପୀ ସାହୁର ଦୋକାନ ଘର ଉପରେ ଟିକିଏ ମାତ୍ର ଦୃଷ୍ଟି ନ ପକାଇ କିମ୍ବା ଏତେ କାଳର ଅଶ୍ୱତ୍ଥଗଛ ଏଇ ପୁରୁଣା ବରଗଛର ଛାଇ ପ୍ରତି ଟିକିଏ ନଜର ନ ଦେଇ ଧାଇଁ ଚାଲିଗଲା ଗୋଟାଏ ନିର୍ମମ ଦୈତ୍ୟ ପରି । ଗୋପୀର ଆଶାଲତା ମୂଳରୁ ଗଲା ଛିଣ୍ଡି । ସନ୍ଧ୍ୟାବେଳେ ପୁଣି ମଟର ବସ୍ ଆସିଲା କିନ୍ତୁ ରହିଲା ନାହିଁ ।

ଗୋପୀ ଭାବିଲା—ହେଉ କଲ ଶଗଡ଼ଟା ସିନା ମଣିଷ ବୋହି ନେଉଛି, ମାଲପତ୍ର ତ ସବୁ ଯିବ ବଳଦ ଶଗଡ଼ରେ । କିନ୍ତୁ ଗୋପୀର ସେ ଆଶା-ଲତାର ମୂଳରେ କୁଠାରାଘାତ କରି ଯେଉଁ ଦିନ ଗୋଟାଏ ମାଲବୁହା ଲରି ସେଇ ବାଟେ ଧାଇଁ ଗଲା, ଗୋପୀର ମନ ଭାଙ୍ଗିଗଲା । ବଳଦ ବା ପୋଢ଼ ଶଗଡ଼ର ସଂଖ୍ୟା ଗଲା କମି । ଗୋପୀର ଆୟ ଗଲା ବହୁତ କମି, କିନ୍ତୁ ଖର୍ଚ୍ଚ ଗଲା ବଢ଼ି । ଗୋପୀ ଅନୁଭବ କଲା ଅଭାବର ତୀବ୍ର କଷାଘାତ ।

× × × ×

ଅଠର ବର୍ଷ ଟି ଝିଅର ବାହାଘର ପାଇଁ ସାହୁକାର ଘରୁ ଆଉ କିଛି ଋଣ ଆଣିଲା । ଅଭାବ ଅନାଟନରେ ପଡ଼ି ଗୋପୀ ଓ ତାର ସ୍ତ୍ରୀ ବଡ଼ ରୁଗ୍ଣ ହୋଇପଡ଼ିଲେ । ପୁଅ ପିଲାଟି ମଧ୍ୟ ଖାଦ୍ୟ ଅଭାବରୁ ବାତଗ୍ରସ୍ତ ହୋଇପଡ଼ିଲା ।

× × × ×

ଗାଁରେ ଲାଗିଲା ବସନ୍ତ । କେତେ ଯେ ଲୋକ ମଲେ, ତାର ଠିକଣା ନାହିଁ । ଦିନେ ହଠାତ୍ ଗୋପୀ ସାହୁର ପୁଅକୁ ହେଲା ବସନ୍ତ । ବୁଢ଼ାଙ୍କର ଦେହ ମନ ଭାଙ୍ଗି ପଡ଼ିଲା । ବାକି ଯାହା ଅଳଙ୍କାର ଥିଲା ସେତକ ବିକା ଭଙ୍ଗା କରି ପୁଅର ଜୀବନରକ୍ଷା ପାଇଁ ପୁଣି ବାସୁଳେଇ ଠାକୁରାଣୀଙ୍କଠେଇଁ କାଳିଆ ବୋଦା ଓ

କାଳିଆ କୁକୁଡ଼ା ବଳି ଦେଲେ; କିନ୍ତୁ ଏଥର କାହିଁକି ଠାକୁରାଣୀଙ୍କ କୃପାକଟାକ୍ଷ ପଡ଼ିଲା ନାହିଁ । ପୁଅଟି ଚାଲିଗଲା ।

ତା ପରେ ପରେ ବୁଢ଼ାକୁ ଧରିଲା ବସନ୍ତ । ଦେହରେ ଛୁଞ୍ଚି ବସାଇବାକୁ ଥାନ ନାହିଁ । ହେଲେ ବୁଢ଼ାର ଦୁଃଖ ନାହିଁ । ସେ ଡାକୁଛି, ହେ ମା ବାସୁଳେଇ ମୋ ପୁଅକୁ ନେଇଛ, ମୋତେ ଭଲା ଦୟାକରି ନେଇଯାଅ । କିନ୍ତୁ ବୁଢ଼ାର ଏ କରୁଣ ଡାକ ଠାକୁରାଣୀଙ୍କର ପାଷାଣ ହୃଦୟ ଭେଦ ପାରିଲା ନାହିଁ । ବୁଢ଼ା ପଡ଼ିପଡ଼ି ଭଲ ହେଲା । କିନ୍ତୁ ତାର ଆଖି ଯୋଡ଼ିକ ଚିରଦିନ ପାଇଁ ହରାଇ ବସିଲା । ପଥି ଧରିଛି କି ନାହିଁ ସାହୁକାରଘର କୋର୍ଟରେ ନାଲିସ୍ କରି ବୁଢ଼ା ବୁଢ଼ୀଙ୍କୁ ଘରୁ ବାହାର କରି ଦେଇ ଯାହା କିଛି କଂସାବାସନ ଥିଲା, ନିଲାମ କରି ନେଲେ ।

ବର୍ତ୍ତମାନ ବୁଢ଼ା ବୁଢ଼ୀ ଯୋଡ଼ିକ ବଡ଼ ନିଃସ୍ୱ ହୋଇ ପଡ଼ିଲେ । ସେଇ ବରଗଛ ମୂଳରେ ଗୋଟିଏ କୁଡ଼ିଆ ଘରେ ପଡ଼ିଁ ପଡ଼ିଥାନ୍ତି । ଦିନବେଳେ ମଟରବସ୍ ଗଲାବେଳେ ବୁଢ଼ା ହାତଧରି ବୁଢ଼ୀ ନେଇଯାଏ ରାସ୍ତା କଡ଼କୁ । ବୁଢ଼ୀ କହେ—"ହାତ ବଢ଼ାଇ ମାଗ ପଇସା ଅଧଲାଏ, କେତେ ବସ୍ ଯାଉଛି ।" କିନ୍ତୁ ବୁଢ଼ାର ପାଟି ଫିଟେ ନାହିଁ । ସେ ଅନୁଭବ କରେ ସତେ ଯେପରି ଏଇ ବସ୍‌ଗୁଡ଼ାକ ତାର ଦୁର୍ଗତିର ଏକମାତ୍ର କାରଣ । କ୍ରୋଧ ଓ ଅଭିମାନରେ ତାର କୋଟରଗତ ଜ୍ୟୋତିହୀନ ନୟନଯୁଗଳରୁ ବୋହିଯାଏ ଦୁଇଧାର ତତଲା ଲୁହ ।।

## ସେ ଯୁଗର ବାଳକ

ଆଜି ଋଷି ଆଶ୍ରମରେ ମହୋତ୍ସବ । ଋଷି-ପିତା ସାରାଜୀବନ ଅନ୍ନଦାନ କରି ଯଶସ୍ୱୀ ହୋଇଛନ୍ତି । ତାଙ୍କ ନାମ ସେହି ସକାଶେ ବାଜଶ୍ରବା* । ବାଜଶ୍ରବାଙ୍କର ସୁଯୋଗ୍ୟ ପୁତ୍ର ବାଜଶ୍ରବସ ପିତାଙ୍କ ଅପେକ୍ଷା ଅଧିକ ବେଶୀ ଖ୍ୟାତି ଅର୍ଜନ କରିବାକୁ ମନବଳାଇଲେ । ମହାଫଳ ଆଶାରେ ସେ ଏକ ବିରାଟ ଯଜ୍ଞ ଆରମ୍ଭ କଲେ । ଯଜ୍ଞର ନାମ ବିଶ୍ୱଜିତ୍ । ଏହି ବିଶ୍ୱଜିତ୍ ଯଜ୍ଞରେ ଋଷିଙ୍କୁ ସର୍ବସ୍ୱଦାନ କରିବାକୁ ପଡ଼ିବ ।

ଯଜ୍ଞ ଆରମ୍ଭ ହେଲା । ସପ୍ତଜିହ୍ୱା ବିସ୍ତାର କରି ଅଗ୍ନି ପ୍ରଜ୍ୱଳିତ । ପବିତ୍ର ଘୃତ ଗନ୍ଧରେ ଯଜ୍ଞଭୂମି ମହକି ଉଠୁଛି । ଗଗନ ପବନ ସମସ୍ତ ସେହି ପବିତ୍ର ଗନ୍ଧରେ ପରିପୂର୍ଣ୍ଣ । ଯଜ୍ଞବେଦୀର ଚତୁର୍ଦ୍ଦିଗରେ ଋତ୍ୱିକବର୍ଗ । ସେମାନଙ୍କ କଣ୍ଠରୁ ସୁଲଳିତ ମଧୁର ସାମଗାନ ଶୁଣାଯାଉଛି । କେହି ବା ଗମ୍ଭୀର ଭାବରେ ଋଗ୍‌ବେଦର ମନ୍ତ୍ର ଆବୃତ୍ତି କରୁଅଛନ୍ତି; କେହି ବା ସ୍ୱରସଂଯୋଗପୂର୍ବକ ପବିତ୍ର ଯଜୁର୍ବେଦ ପାଠ କରୁଅଛନ୍ତି ।

---

* ବାଜ (ଅନ୍ନ) ଏଥିଯୋଗୁ ଶ୍ରବଃ (ଯଶ) ଯାହାର ସେ ଅନ୍ନଦାନ କରି ଯଶସ୍ୱୀ ହୋଇଛନ୍ତି, ସେ ବାଜଶ୍ରବା ।

ସ୍ୱନାମଧନ୍ୟ ମୁନିଋଷିମାନେ ଯଜ୍ଞସ୍ଥଳକୁ ନିମନ୍ତ୍ରିତ । ସର୍ବତ୍ର ଆନନ୍ଦ ଉତ୍ସବ, ଉଲ୍ଲାସ ଏବଂ କୋଳାହଳ । ଆଜି ବାଜଶ୍ରବସଙ୍କର ବିଶ୍ୱଜିତ୍ ଯଜ୍ଞ । ଯଜ୍ଞରେ ଦେବତାମାନେ ପରିତୃପ୍ତ ହେବେ । ପ୍ରାଣୀବର୍ଗ ସୁଖଶାନ୍ତି ଲାଭ କରିବେ । ଧରିତ୍ରୀପୃଷ୍ଠରେ ଶାନ୍ତି ବିରାଜିତ ହେବ । ଏହାହିଁ ଯଜ୍ଞର ଲକ୍ଷ୍ୟ ।

କିନ୍ତୁ ଏ କଣ ? ଏହି ଆନନ୍ଦ ଉତ୍ସବରେ ଏକ ସୁକୁମାର ଶିଶୁ ବିଷଣ୍ଣବଦନ । ଯଜ୍ଞପ୍ରାୟ ଶେଷ ହୋଇ ଆସିଲା । ଋଷି ତାଙ୍କର ସମସ୍ତ ସମ୍ପତ୍ତି ଦାନ କରିଛନ୍ତି । ବର୍ତ୍ତମାନ ଦକ୍ଷିଣା ଦିଆଯିବ ଗାଭୀ । ପୁରୋହିତମାନେ ଭାଗ ନେବେ । ଗୋ-ଦକ୍ଷିଣା ସକଳ ଦକ୍ଷିଣା ମଧ୍ୟରେ ଶ୍ରେଷ୍ଠ । କିନ୍ତୁ ଏହି ଗାଭୀଗୁଡ଼ିକ ବୃଦ୍ଧ ଏବଂ ଶୀର୍ଣ୍ଣ । ମନେ ହୁଏ, ଏମାନଙ୍କର ଆୟୁ ପ୍ରାୟ ଶେଷ ହୋଇ ଗଲଣି । ଏହି ଦୃଶ୍ୟ ଦେଖି ଶିଶୁ ହୃଦୟ ଆଜି ବିଚଳିତ ।

ଏହି ଶିଶୁ ବାଜଶ୍ରବାଙ୍କ ନାତି । ସେ ବାଜଶ୍ରବସଙ୍କ ପୁତ୍ର ନଚିକେତା । ପିତା କେତେ ଫଳ ଆଶାକରି ଏହି ବିଶ୍ୱଜିତ୍ ଯଜ୍ଞ କରିଅଛନ୍ତି । କିନ୍ତୁ ଶେଷରେ ଦକ୍ଷିଣା ଦେବେ ଏହି ଅକର୍ମଣ୍ୟ ଗାଭୀଗୁଡ଼ିକୁ । ଏହି ଚିନ୍ତାହିଁ ଶିଶୁ ଅନ୍ତରକୁ ବିକ୍ଷୋଭିତ କରୁଛି । ପିତାଙ୍କର ମଙ୍ଗଳ କାମନାକରି ବାଳକ ନଚିକେତା ପୁଣି ସେହି ଗାଭୀଗୁଡ଼ିକ ଉପରେ ଦୃଷ୍ଟିନିକ୍ଷେପ କଲେ । ତାଙ୍କ ପ୍ରାଣରେ ଶୁଭବୁଦ୍ଧିର ଉଦୟ ହେଲା । ଭାବିଲେ, ଏହିଭଳି ଦାନରେ କଦାପି ପିତାଙ୍କର ମଙ୍ଗଳ ହେବ ନାହିଁ । ଅନ୍ତର ମଧ୍ୟ ସେ ମନେ ମନେ ସ୍ଥିର କଲେ ଯେ, ଆବଶ୍ୟକ ହେଲେ ପିତାଙ୍କର ମଙ୍ଗଳ ସକାଶେ ସେ ନିଜକୁ ମଧ୍ୟ ଦାନ କରି ପାରନ୍ତି ।

ଯଜ୍ଞକୁଣ୍ଡ ନିକଟକୁ ଯାଇ ସେ ପିତାଙ୍କୁ ବିନୟରେ ପ୍ରଶ୍ନ କଲେ, "ପିତା, ଏ ଯଜ୍ଞରେ ତ ଆପଣଙ୍କର ସର୍ବସ୍ୱ ଦାନ ଦିଆଯିବାର

କଥା ? ତେବେ ମୋତେ କାହାକୁ ଦାନକଲେ କହିବେ କି ?" ଋଷି କୌଣସି ଉତ୍ତର ଦେଲେ ନାହିଁ, ପୁନଶ୍ଚ ନଚିକେତା ପିତାଙ୍କୁ ଜିଜ୍ଞାସାକଲେ, 'ମୋତେ କାହାକୁ ଦାନକଲେ ?' ଏଥର ବି ଋଷି ନୀରବ ରହିଲେ; ତୃତୀୟ ଥର ପ୍ରଶ୍ନ କରନ୍ତେ ପିତା କ୍ରୋଧାନ୍ୱିତ ହୋଇ କହି ପକାଇଲେ, "ମୁଁ ତୁମକୁ ଯମଙ୍କୁ ପ୍ରଦାନ କଲି।"

ଋଷି ବଚନ କଦାପି ଅନ୍ୟଥା ହେବ ନାହିଁ । ନଚିକେତା ମନେ ମନେ ବିଳାପ କରିବାକୁ ଲାଗିଲେ । "ନିଶ୍ଚୟ ପିତୃଦେବ ମୋ ଉପରେ କ୍ରୋଧାନ୍ୱିତ; ନଚେତ୍ ଏପରି ନିଷ୍ଠୁର କଥା କହନ୍ତେ କିପରି ? ମୁଁ ତ କୌଣସି ଦିନ ପିତାଙ୍କର ଉଚିତ ପରିଚର୍ଯ୍ୟାରେ ତ୍ରୁଟି କରି ନାହିଁ । ମୋତେ ତେବେ କାହିଁକି ଯମଙ୍କୁ ଦେଲେ ?"

ହଉ ତେବେ, ପିତାଙ୍କର ସମ୍ମାନ, ସତ୍ୟର ସମ୍ମାନ ରକ୍ଷିବାକୁ ହେବ । ଏହି ସତ୍ୟ ପାଳନ ସକାଶେ ପିତାଙ୍କର ମଧୁର ସ୍ନେହ ବନ୍ଧନରୁ ବିଚ୍ଛିନ୍ନ ହେବାପାଇଁ ମୁଁ କଦାପି କୁଣ୍ଠିତ ହେବି ନାହିଁ । ନଚିକେତା ପିତାଙ୍କର ଚରଣ ଧରି କହିଲେ, "ପିତା, କ୍ରୋଧ ସମ୍ବରଣ କରନ୍ତୁ, ମୋତେ କ୍ଷମା କରନ୍ତୁ, ଆପଣ ବୁଢ଼ାଗାଈ ଦାନ କରୁଥିବା ଦେଖି ମୁଁ କହିଥିଲି, ଆପଣଙ୍କ ପୁତ୍ରକୁ ମଧ୍ୟ ସେମାନଙ୍କ ସଙ୍ଗରେ ଦାନ କରନ୍ତୁ । ଆପଣଙ୍କ ଯଜ୍ଞ ପୂର୍ଣ୍ଣତାପ୍ରାପ୍ତ ହେବ । ଏହା ଶୁଣି କୋପାବିଷ୍ଟ ହୋଇ ମୋତେ ଆପଣ ଯମଙ୍କ ନିକଟକୁ ପ୍ରସ୍ଥାଣ କରିବାକୁ ଆଦେଶ ଦେଲ । ସେ ଆଦେଶ ବର୍ତ୍ତମାନ ଶିରୋଧାର୍ଯ୍ୟ । ଯମଙ୍କ ନିକଟକୁ ଯିବାକୁ ମୋତେ ଅନୁମତି ଦିଅନ୍ତୁ ।"

ଶିଶୁସନ୍ତାନର କୋମଳ କଣ୍ଠରୁ ଏପରି ବାକ୍ୟ ଶୁଣି ପିତାଙ୍କର ହୃଦୟ ବିଗଳିତ ହେଲା । ସେ ସିନା କ୍ରୋଧରେ ଏପରି କହିଥିଲେ । ବର୍ତ୍ତମାନ ଅନୁତାପ କରିବାକୁ ଲାଗିଲେ । ଏପର୍ଯ୍ୟନ୍ତ ଋଷି କଥାର ମର୍ମ ହୃଦୟଙ୍ଗମ କରି ପାରି ନ ଥିଲେ । ତେଣୁ ପୁତ୍ରକୁ

ଏପରି ପନ୍ଥା ଅବଲମ୍ବନ କରିବାକୁ ନିଷେଧ କଲେ । ମାତ୍ର ଋଷିପୁତ୍ର ପିତାଙ୍କୁ ସମ୍ବୋଧନ କରି କହିଲେ, "ପିତା, ସତ୍ୟହିଁ ଋଷିମାନଙ୍କର ପରମଧନ । ଆପଣ ଯାହା କରିଛନ୍ତି ତାହାହିଁ ମୁଁ ଅକାତରରେ, ଅକୁଣ୍ଠ ଚିତ୍ତରେ ପାଳନ କରିବି ।"

ନଚିକେତାଙ୍କ ପ୍ରତିଜ୍ଞା ଶୁଣି ଋଷିଙ୍କର ଚୈତନ୍ୟ ଉଦୟ ହେଲା । ସେ ବର୍ତ୍ତମାନ ନିଜର ଭ୍ରମ ବୁଝିପାରିଲେ କିନ୍ତୁ ଆଉ ଉପାୟ ନାହିଁ । ଧନୁରୁ ଶର ଯେପରି ଥରେ ବାହାରିଗଲେ ଆଉ ଫେରି ଆସେ ନାହିଁ ସେହିପରି ମୁଖରୁ ଥରେ ବଚନ ନିର୍ଗତ ହେଲେ ଆଉ ପ୍ରତ୍ୟାବର୍ତ୍ତିତ କରେ ନାହିଁ । ପିତାଙ୍କର ସତ୍ୟ ରକ୍ଷିବାକୁ ପୁତ୍ର ହିମାଚଳପରି ଅଟଳ ଓ ଅଚଳ । ଋଷିଙ୍କର ଆଦେଶ ନେଇ ନଚିକେତା ଯମପୁର ଲକ୍ଷ୍ୟରେ ଯାତ୍ରା କଲେ । ଆଜି ବିଶ୍ୱଜିତ୍ ଯଜ୍ଞର ପୂର୍ଣ୍ଣାହୁତି ହେଲା । ନଚିକେତା ଆଉ ଇହଲୋକରେ ନାହାନ୍ତି । ଆଶ୍ରମରେ ହାହାକାର । ସମସ୍ତେ ଦୁଃଖାଭିଭୂତ ।

ଯମଲୋକ । କି ଭୟଙ୍କର ସେ । ଯେତେ ପ୍ରାଣୀ ସମସ୍ତଙ୍କୁ ଯମ ଯେ କେବଳ ସଂହାର କରନ୍ତି ତାହା ନୁହେଁ । ପରନ୍ତୁ ନରକକୁଣ୍ଡରେ ନିକ୍ଷେପ କରି ସେମାନଙ୍କୁ ମର୍ମବିଦାରକ ଅସହ୍ୟ ଯନ୍ତ୍ରଣା ଦିଅନ୍ତି ।

ମୃତ୍ୟୁରାଜ ଯମ—ସେ ସାକ୍ଷାତ୍ ଧର୍ମ—ଧର୍ମରାଜ । ଦୋଷୀ ପାପୀଙ୍କୁ ଦଣ୍ଡଦେଇ ସେ ଶାସନ କରନ୍ତି । ନିୟମ ଦ୍ୱାରା ନିୟନ୍ତ୍ରିତ କରନ୍ତି । ସେହି ସକାଶେ ତାଙ୍କ ନାମ ଯମ । ମୃତ୍ୟୁଦେବତା ସ୍ୱଗୃହରେ ନାହାନ୍ତି । ନଚିକେତା ନିଜର ଅପୂର୍ବ ଦୀପ୍ତିରେ ଚତୁର୍ଦ୍ଦିଗ ଉଜ୍ଜ୍ୱଳକରି ତାଙ୍କ ଅପେକ୍ଷାରେ ବସିଛନ୍ତି । ଚିନ୍ତା ନାହିଁ, କ୍ଷୋଭ ନାହିଁ । ବରଂ ନିରତିଶୟ ଆନନ୍ଦରେ ଅଗ୍ନିହୋତ୍ର ସାଧନରେ ସେ ବ୍ରତୀ । ଯମଙ୍କର ପରିବାରବର୍ଗ କେହି ନଚିକେତାଙ୍କୁ ଅଭ୍ୟର୍ଥନା କରିବାକୁ ସାହସ କଲେ ନାହିଁ । ଯମ ସ୍ୱଗୃହରେ ଉପସ୍ଥିତ ହୋଇ

ଦେଖନ୍ତି, ନଚିକେତା ଧ୍ୟାନମଗ୍ନ । ଗଭୀର ଚିନ୍ତା ବଳରେ ସେ ଜାଣି ପାରିଲେ ଯେ, ଶିଶୁ ତିନି ଦିନ କାଳ ଅନ୍ନ ଜଳ ସ୍ପର୍ଶ କରିନାହାନ୍ତି ଏବଂ ଏକ ଗୃହରେ ମଧ୍ୟ ସେ ସତ୍କୃତ ହୋଇ ନାହାନ୍ତି । ଯମ, ଦୁଃଖରେ ଓ ଲଜ୍ଜାରେ ମି୍ରୟମାଣ ହୋଇ ପଡ଼ିଲେ ଏବଂ ଭାବିଲେ, ସେ କି ଅପରାଧ କରିନାହାନ୍ତି । ଅତିଥିସତ୍କାର ପ୍ରତ୍ୟେକ ବ୍ୟକ୍ତିର ପରମ କର୍ତ୍ତବ୍ୟ । ତେଣୁ ସେ ନଚିକେତାଙ୍କୁ ନମସ୍କାର କରି ସ୍ୱହସ୍ତରେ ଜଳ ଆଣି ତାଙ୍କ ପଦ ଧୋଇଦେଲେ ଏବଂ ଆସନରେ ବସିବାକୁ ପ୍ରାର୍ଥନା କଲେ ।

ନିଜ ଅପରାଧର ପ୍ରାୟଶ୍ଚିତ୍ତ କିପରି ହେବ ଏହା ଚିନ୍ତାକରି ଯମ ନଚିକେତାଙ୍କୁ ବର ମାଗିବାକୁ ଅନୁରୋଧ କଲେ । ତାଙ୍କର ବିଶ୍ୱାସ, ବରଲାଭ କଲେ ନଚିକେତା ଆନନ୍ଦ ଅନୁଭବ କରିବେ ଏବଂ ଯମଙ୍କର ପାପର ପ୍ରାୟଶ୍ଚିତ୍ତ ହୋଇପାରିବ । ତାପରେ ନଚିକେତା ଯମଙ୍କୁ ତିନୋଟି ପ୍ରଶ୍ନ ପଚାରି ଥିଲେ । ଯମ ମାତ୍ର ଦୁଇଟି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଲେ । କିନ୍ତୁ ତୃତୀୟ ପ୍ରଶ୍ନ ଶୁଣି ଯମ ଅଶ୍ଚର୍ଯ୍ୟାନ୍ୱିତ ହେଲେ । ନଚିକେତାଙ୍କ ଜ୍ଞାନପିପାସା ଦେଖି ତାଙ୍କୁ ପ୍ରଶଂସା କଲେ ଏବଂ ଆଶୀର୍ବାଦ ବର୍ଷଣ କରିବାକୁ ଲାଗିଲେ । ସେହି ପ୍ରଶ୍ନଟି ଅତ୍ୟନ୍ତ ଦୁରୂହ । ବିଶ୍ୱର ପରମତତ୍ତ୍ୱ ସେହିଥିରେହିଁ ସନ୍ନିବେଶିତ ।

ମୃତ୍ୟୁ ଦେବତା ଶେଷରେ ନଚିକେତାଙ୍କର ନିଷ୍ଠା ଓ ଦୃଢ଼ତା ଦେଖି ତାଙ୍କର ମନସ୍କାମନା ପୂର୍ଣ୍ଣ କଲେ ।

ସେହି ପରମତତ୍ତ୍ୱ ନଚିକେତା ଭାରତରେ ପ୍ରଚାର କରିଗଲେ । ବାଳକର ଏଭଳି ସାହସ ଏବେ ମଧ୍ୟ ଆମ୍ଭମାନଙ୍କୁ ବିସ୍ମୟରେ ଅଭିଭୂତ କରେ ।

ନଚିକେତା କି ପ୍ରଶ୍ନ ପଚାରିଥିଲେ ଓ କି ଶିକ୍ଷା ଲାଭକଲେ ବଡ଼ ହେଲେ ତାହା ପଢ଼ିବ ଓ ବୁଝିବ ।

## ବ୍ୟବଧାନ

ବନମାଳୀ ଓ ହିମାଂଶୁମାଳୀ, ଜଣେ ଜଣକର ମାମୁଁପୁଅ ଭାଇ; ସେ କିନ୍ତୁ ଅନେକ ଦୂରସମ୍ପର୍କରେ । କିନ୍ତୁ ଏମାନଙ୍କର ଦୁଇଟିଯାକ ପରିବାର ବହୁକାଳରୁ ପ୍ରତିବେଶୀ ଭାବରେ ରହି ଆସିଛନ୍ତି । ମଝିରେ ବ୍ୟବଧାନ ଖାଲି ଖଣ୍ଡେ ବଗିଚା, ଏଥିଲାଗି ରକ୍ତସମ୍ପର୍କ ଖୁବ୍ ନିକଟ ନ ହେଲେ ମଧ୍ୟ ଦୁଇ ପରିବାର ଭିତରେ ଘନିଷ୍ଠତାର ଅଭାବ ନାହିଁ ।

ବନମାଳୀ ବୟସରେ ହିମାଂଶୁଠାରୁ ଅଚ୍ଛା ବଡ଼ । ହିମାଂଶୁର ଯେତେବେଳେ ଦାନ୍ତ ଉଠି ନ ଥିଲା, ପାଟି ଫିଟି ନ ଥିଲା, ସେତେବେଳେ ବନମାଳୀ ତାକୁ ଅନେକ ଥର ଏଇ ବଗିଚାରେ ପବନ ଖୁଆଇବାକୁ କାଖେଇ କରି ନେଇଛି, ତା ସଙ୍ଗେ ଖେଳିଛି; ଏକାଧିକ-ବାର ତାକୁ ତୁନି କରିଛି ଓ ଶୁଆଇ ପକାଇଛି । ଶିଶୁର ମନୋରଞ୍ଜନ କରିବା ପାଇଁ ପରିଣତ ବୁଦ୍ଧିର ବୟସ୍କ ଲୋକମାନେ ବଡ଼ ପାଟିରେ ପ୍ରଳାପ କରିବା ପ୍ରଭୃତି ଅନେକ ବୟସାନୁଚିତ ଚାପଲ୍ୟ ଓ ଉତ୍କଟ ଉଦ୍ୟମ ପ୍ରକାଶ କରିଥାନ୍ତି । ବନମାଳୀ ଏସବୁ ବାକି ରଖି ନାହିଁ ।

ବନମାଳୀ ଖୁବ୍ ବେଶୀ ପାଠଶାଠ ପଢ଼ି ନାହିଁ । ବଗିଚା କରିବା ପାଇଁ ତାର ପିଲା ଦିନରୁ ଖୁବ୍ ସଉକ ଥିଲା ଏବଂ ଖେଳିବାକୁ ସାଙ୍ଗରେ ଏଇ ଦୂରସମ୍ପର୍କୀୟ ଭାଇଟି ଥିଲା । ହିମାଂଶୁକୁ ସେ ଏକ ଦୁର୍ଲଭ ଦୁର୍ମୂଲ୍ୟ ଲତାଟି ପରି ହୃଦୟର ସମସ୍ତ ସ୍ନେହ ସିଞ୍ଚନ ଦ୍ୱାରା ବଢ଼ାଇ ଅଣିଥିଲା । ତାର ସମସ୍ତ ଅନ୍ତର ବାହାରକୁ ଆଚ୍ଛନ୍ନ କରି ଲତାଟି ଯେତିକି ଲଟେଇବାକୁ ଲାଗିଲା, ବନମାଳୀ ନିଜକୁ ସେତିକି ଧନ୍ୟ ମନେ କରିବାକୁ ଲାଗିଲା ।

ଘରବାହାର ଦେଖା ନ ଗଲେ ମଧ୍ୟ ଅନେକ ଲୋକଙ୍କର ଏପରି ଗୋଟାଏ ସ୍ୱଭାବ ଅଛି ଯେ, ସେମାନେ କୌଣସି ଏକ ଛୋଟ ଝିଅଲି, ଛୋଟ ଶିଶୁ ବା କୌଣସି ଅକୃତଜ୍ଞ ବନ୍ଧୁ ନିକଟରେ ଅନାୟାସରେ ଆପଣାକୁ ସମର୍ପଣ କରି ଦିଅନ୍ତି । ଏଇ ବିପୁଳ ପୃଥିବୀରେ କେବଳ କ୍ଷୁଦ୍ର ସ୍ନେହର କାରାଗାରରେ ଜୀବନର ସମସ୍ତ ମୂଳଧନ ଅଟକାଇ ଦେଇ ନିଶ୍ଚିନ୍ତ ରହନ୍ତି; ତାପରେ ହୁଏତ ସାମାନ୍ୟ ଉପସ୍ୱତ୍ୱ ନେଇ ପରମ ସନ୍ତୋଷରେ ସାରା ଜୀବନ କଟାଇ ଦିଅନ୍ତି କିମ୍ବା ହଠାତ୍ ଝିଅଲି ଭାବରେ ନିଜର ଘରବାଡ଼ି ବିକିକରି ସର୍ବସ୍ୱାନ୍ତ କାଙ୍ଗାଳ ହୋଇ ବୁଲନ୍ତି ।

ହିମାଂଶୁ ଟିକିଏ ବଡ଼ ହୋଇଗଲା । ତଥାପି ବୟସର ତାରତମ୍ୟ ସତ୍ତ୍ୱେ ବନମାଳୀ ସହିତ ତାର ଏକ ବନ୍ଧୁତ୍ୱର ବନ୍ଧନ ସ୍ଥାପିତ ହେଲା । ସେମାନଙ୍କର ବନ୍ଧୁତାରେ ଯେପରି ବଡ଼ ସାନର କୌଣସି ପ୍ରଶ୍ନ ଉଠୁ ନ ଥିଲା ।

ଅବଶ୍ୟ ଏହା ପଛରେ କାରଣ ଯଥେଷ୍ଟ ଥିଲା । ହିମାଂଶୁ ପଢ଼ାଶୁଣା କରେ, ତାର ଜ୍ଞାନସ୍ପୃହା ଅତି ପ୍ରବଳ । ଯେ କୌଣସି ବହି ପାଇଲେ ସେ ସଙ୍ଗେ ସଙ୍ଗେ ନ ପଢ଼ି ଛାଡ଼େ ନାହିଁ । ଏହାଦ୍ୱାରା ସେ ଅନେକ ବାଜେ ବହି ପଢ଼ିଥିଲା ସତ; କିନ୍ତୁ ଯେପରି

ହେଉ ଗୃହଅଡ଼ର ନାନା ବିଷୟରେ ତାର ଜ୍ଞାନ କ୍ରମେ ପରିଣତ ହୋଇ ଯାଉଥିଲା । ବନମାଳୀ ଖୁବ୍ ମନ ଦେଇ ତା' କଥା ଶୁଣେ, ତାର ପରାମର୍ଶ ନିଏ; ତା ସହିତ ଛୋଟ ବଡ଼ ସବୁ କଥାରେ ଆଲୋଚନା କରେ, କେତେବେଳେ ହେଲେ ଛୋଟ ପିଲା ବୋଲି ତୁଚ୍ଛ କରି ଦିଏ ନାହିଁ । ହୃଦୟର ସର୍ବପ୍ରଥମ ସ୍ନେହବସ୍ତୁ ଲାଭ କରି ଯେ ମଣିଷ ହୋଇଛି, ତାର ବୟସ୍କ ଅବସ୍ଥାରେ ଯଦି ସେ ନିଜର ବୁଦ୍ଧି, ଜ୍ଞାନ ଓ ଉନ୍ନତ ସ୍ୱଭାବ ପାଇଁ ଶ୍ରଦ୍ଧାର ଅଧିକାରୀ ହୋଇପାରେ, ତେବେ ତାଠାରୁ ବଳି ପରମ ଭାଗ୍ୟବାନ୍ ପୃଥିବୀରେ ଆଉ କେହି ନାହାନ୍ତି ।

ହିମାଂଶୁ ମଧ୍ୟ ବଗିଚା କରିବାକୁ ଭଲ ପାଉଥିଲା, କିନ୍ତୁ ଏ ବିଷୟରେ ଦୁହିଙ୍କ ଭିତରେ ଟିକିଏ ଫରକ ରହିଥିଲା । ବନମାଳୀର ଭଲ ପାଇବା ହୃଦୟର, ହିମାଂଶୁର ଭଲପାଇବା ବୁଦ୍ଧିର । ପୃଥିବୀର ଏଇ କୋମଳ ବନସମ୍ପଦ ଏଇ ଅଚେତନ ଜୀବନରାଶି ଯେଉଁମାନେ ତାହାଙ୍କଠାରୁ ଯତ୍ନର କୌଣସି ଲାଳସା ରଖନ୍ତି ନାହିଁ, ଅଥଚ ଯତ୍ନ ପାଇଲେ ଘରର ପିଲାମାନଙ୍କ ପରି ହସି ହସି ବଢ଼ି ଉଠନ୍ତି, ଯେଉଁମାନେ ମଣିଷ ଶିଶୁଠାରୁ ଅଧିକ ଶିଶୁ, ନିଜର ନିଷ୍ଠା ଦେଇ ସେଇମାନଙ୍କୁ ବଢ଼ାଇବାପାଇଁ ବନମାଳୀର ସ୍ୱାଭାବିକ ପ୍ରବୃତ୍ତି ଥିଲା; କିନ୍ତୁ ଏଇ ଗଛ, ଲତା ଉପରେ ହିମାଂଶୁର ଏକ ପ୍ରକାର କୌତୂହଳ ଦୃଷ୍ଟି ଥିଲା । ମଞ୍ଜିରୁ ଗଛ ହୁଏ, ଗଛରୁ କଅଁଳ ପତ୍ର ବାହାରେ, କଢ଼ ଧରେ, ଫୁଲ ଫୁଟେ, ଏ ସବୁ ଦେଖି ହିମାଂଶୁର ମନ ସେଅଡ଼କୁ ଟାଣି ହୋଇଯାଏ ।

ମଞ୍ଜି ଲଗାଇବା, କଲମୀ କରିବା, ସାର ଦେବା, ହୁଡ଼ା ତିଆରି କରିବା ପ୍ରଭୃତି ସମ୍ବନ୍ଧରେ ହିମାଂଶୁର ମନରେ ନାନା ଉପାୟ ବୁଦ୍ଧି ଆସି ପହଞ୍ଚେ ଏବଂ ଅତି ଆନନ୍ଦରେ ବନମାଳୀ ସେଗୁଡ଼ିକ ଗ୍ରହଣ

କରେ । ଏଇ ବଗିଚ୍ଚ ଖଣ୍ଡିକ ଭିତରେ ଅକୃତ୍ତ ପ୍ରକୃତରେ ଯେତେ ପ୍ରକାର ଯୋଗ ବିୟୋଗ ଓ ପରିବର୍ତ୍ତନ ସମ୍ଭବ ହୋଇପାରେ, ଦୁହେଁ ସେ ସବୁ ନ କର ଛାଡ଼ନ୍ତି ନାହିଁ ।

ଦାଣ୍ଡରେ ବଗିଚ୍ଚ ଭିତରେ ଗୋଟିଏ ପଥରର ଛୋଟ ବେଦୀ ଥିଲା । ଗୃରଟା ବାଜିଲେ ଖଣ୍ଡେ ପଢଲା କାମିଜ ପିନ୍ଧି, କମକର୍ ଗୃଦର କାନ୍ଧରେ ପକାଇ, ହୁକା ନେଇ ବନମାଳୀ ସବୁଦିନ ସେଠି ଯାଇ ବସେ । ସାଥୀରେ କୌଣସି ବନ୍ଧୁବାନ୍ଧବ ନାହାନ୍ତି, କୌଣସି ବହି ବା ଖବର କାଗଜ ନାହିଁ । ବସି ବସି ହୁକା ଟାଣେ, କେତେବେଳେ ଅବା ଉଦାସୀନ ଭାବେ ଏଣେ ତେଣେ କଡ଼େଇ ଗୃହୁଁଥାଏ । ହୁକାର ବାଷ୍ପକୁଣ୍ଡଳୀ ପରି ଧୀରେ ଧୀରେ ସମୟ କଟିଯାଏ, ବନମାଳୀ ତାର ହିସାବ ରଖିପାରେ ନାହିଁ ।

ଶେଷରେ ହିମାଂଶୁ ସ୍କୁଲରୁ ଆସି ଗୋଡ଼ହାତ ଧୋଇ, ଅନେକ ସମୟ ପରେ ସେଇଠି ଆସି ପହଞ୍ଚିଯାଏ । ହୁକାନଳ ଛାଡ଼ି ବନମାଳୀ ଉଠି ଠିଆ ହୁଏ । ଏତେବେଳ ଯାଏ ସେ କାହାର ଆସିବାକୁ ଯେ ଅନାଇ ବସିଥିଲା, ତାର ଆଗ୍ରହ ଦେଖି ସେ କଥା ସ୍ପଷ୍ଟ ଜଣା ପଡ଼ିଯାଏ ।

ତା ପରେ ଦୁହେଁ ବଗିଚ୍ଚରେ ବୁଲି ବୁଲି ନାନା ଆଳାପ କରନ୍ତି । ଅନ୍ଧାର ହୋଇ ଆସିଲେ ପୁଣି ଆସି ସେଇ ବେଦୀ ଉପରେ ବସନ୍ତି । ଗଛ ପତ୍ରରେ ମର୍ମର ବଜାଇ ଦକ୍ଷିଣା ପବନ ବହି ଯାଉଥାଏ । ଦିନେ ଦିନେ ହୁଏତ ପବନ ଅଭାବରୁ ପତ୍ରର ହଲେ ନାହିଁ । ଗଛଗୁଡ଼ାକ ଛବିପରି ଠିଆ ହୋଇ ରହିଥାନ୍ତି । ମୁଣ୍ଡ ଉପରେ ଅଗଣିତ ତାରାର ନିସ୍ପନ୍ଦ ପ୍ରଦୀପ ଜଳୁଥାଏ ।

ହିମାଂଶୁ ଗପିଯାଏ; ବନମାଳୀ ଶୁଣେ । ବୁଝୁ ନ ବୁଝୁ ସବୁକଥାଗୁଡ଼ାକ ତାକୁ ବଡ଼ ଭଲଲାଗେ । ଯେଉଁ କଥାସବୁ ଅଭ

କାହା ପାଖରୁ ଶୁଣିଲେ ବିରକ୍ତ ଲାଗୁଥାନ୍ତା, ସେଇ କଥାଗୁଡ଼ାକ ହିମାଂଶୁର ମୁଖରେ ତାକୁ ବଡ଼ କୌତୁକିଆ ଲାଗେ । ଅଭ୍ ବନମାଳୀ ପରି ଶ୍ରଦ୍ଧାବାନ୍ ବୟସ୍ଥ ଶ୍ରୋତା ପାଇ ହିମାଂଶୁର ବକ୍ତୃତାଶକ୍ତି, ସ୍ମୃତିଶକ୍ତି ଓ କଳ୍ପନାଶକ୍ତି ସର୍ବଶେଷ ସନ୍ତୋଷ ଲାଭକରେ । କେତେବେଳେ ପଢ଼ା ବହିରୁ, କେତେବେଳେ ନିଜ ମନରୁ ସୃଷ୍ଟିକରି ସେ ନାନାକଥା କହିଯାଏ । ଅନେକ କଥା ବନେଇ ଚୂନେଇ କହି ସେ ନିଜର ସ୍ୱଳ୍ପଜ୍ଞାନକୁ ଘୋଡ଼ାଇ ରଖେ । ଠିକ୍ ଅଠିକ୍ ଅନେକ କଥା ସେ କହେ; କିନ୍ତୁ ବନମାଳୀ ସବୁକଥା ସମାନ ଗମ୍ଭୀରଭାବେ ଶୁଣିଯାଏ, ମଝିରେ ମଝିରେ ଥରେ ଦୁଇଥର ପ୍ରଶ୍ନକରେ । ହିମାଂଶୁ ତାର ପ୍ରଶ୍ନର ପ୍ରତିବାଦ କରି ଯାହା କହେ, ସେ ସେଇଥିରେ ରାଜି ହୋଇଯାଏ ଏବଂ ତା ଅରବିନ ଏକୁଟିଆ ବେଦୀ ଉପରେ ବସି ହୁକା ଟାଣିଲାବେଳେ ସେଇସବୁ କଥା ଖୁବ୍ କୌତୂହଳୀ ହୋଇ ଚିନ୍ତା କରେ ।

ହଠାତ୍ ଏଇ ସମୟରେ ଗୋଟାଏ ଗୋଳମାଳ ଆସି ପହଞ୍ଚିଲା । ବନମାଳୀଙ୍କ ବଗିଚା ଓ ହିମାଂଶୁଙ୍କର ଘରର ସରହଦରେ ଗୋଟାଏ ନାଳୀ ଯାଇଛି । ସେଇ ନାଳୀର ଗୋଟାଏ ଜାଗାରେ ଟଭା ଗଛଟିଏ ଥିଲା । ଗଛରେ ଫଳ ହେଲେ ବନମାଳୀଙ୍କ ଚାକର ସେଗୁଡ଼ିକ ପାରି ଆଣିବାକୁ ଯାଏ, ହିମାଂଶୁଙ୍କ ଘରର ଚାକର ତାକୁ ମନାକରେ । ତା ପରେ ଦୁହିଙ୍କ ଭିତରେ ଏମିତି କଳିଅଗୋଳ ଲାଗିଯାଏ ଯେ କଳିଅଗୁଡ଼ାକ ଗୋଡ଼ମାଟି ହୋଇଥିଲେ ନାଳୀଟା ଅନେକ ଦିନରୁ ପୋତିହୋଇ ଯାଆନ୍ତାଣି ।

ହଠାତ୍ ଦିନେ ଏପରି କଳିଅ ଲାଗୁ ଲାଗୁ ବନମାଳୀର ବାପା ହରଚନ୍ଦ୍ର ଓ ହିମାଂଶୁର ବାପା ଗୋକୁଳଚନ୍ଦ୍ରଙ୍କ ଭିତରେ ମଧ୍ୟ

ଘୋର ବିବାଦ ଲାଗିଗଲା । ଦୁହେଁ ନାଳୀ ଉପରେ ନିଜର ଦଖଲ ଦାବୀକରି ଅଦାଲତର ଅଶ୍ରୟପ୍ରାର୍ଥୀ ହେଲେ ।

ଜେତେକ ମହାରଥୀ ଓକିଲ—ବାରିଷ୍ଟରଙ୍କ ଭିତରେ ଏକେତରଫ ପକ୍ଷରୁ ସୁଦୀର୍ଘ ବାକ୍ ଯୁଦ୍ଧ ଆରମ୍ଭ ହୋଇଗଲା । ଉଭୟପକ୍ଷ ପାଣି ପରି ଟଙ୍କା ଖର୍ଚ୍ଚ କଲେ; ଶ୍ରାବଣ ମାସରେ ସେ ନାଳୀଦେଇ ବୋଧହୁଏ ଏତେ ପାଣି ଯାଇ ନ ଥିବ ।

ଶେଷରେ ହରଚନ୍ଦ୍ରଙ୍କର ଜିତାପଟ ହେଲା, ପ୍ରମାଣ ହେଲା ନାଳୀଟା ତାଙ୍କର ଏବଂ ଟଗିଗଛରେ ଆଉ କାହାର କୌଣସି ଅଧିକାର ନାହିଁ । ଅପିଲକରି ମଧ୍ୟ ଗୋକୁଳଚନ୍ଦ୍ର କିଛି ଫଳ ପାଇଲେ ନାହିଁ ।

ଯେତେ ଦିନ ମକଦ୍ଦମା ଚାଲିଥିଲା, ସେତେ ଦିନ ଯାଏ ଦୁଇ ଭାଇଙ୍କର ବନ୍ଧୁତ୍ୱରେ କୌଣସି ବ୍ୟାଘାତ ଆସି ନ ଥିଲା । ଏପରି କାଳେ ପରସ୍ପରକୁ ସେଇ ବିବାଦର ଛାୟା ସ୍ପର୍ଶକରିବ, ସେଇ ଆଶଙ୍କାରେ କାତର ହୋଇ ବନମାଳୀ ଦୁଇଗୁଣ ଘନିଷ୍ଠ ଭାବରେ ହିମାଂଶୁକୁ ତାର ହୃଦୟ ଭିତରେ ବାନ୍ଧି ରଖିବାକୁ ଚେଷ୍ଟା କରିଥିଲା ଏବଂ ହିମାଂଶୁ ମଧ୍ୟ ସେଥିରେ ଲେଶମାତ୍ର ଅପତ୍ତି କରି ନ ଥିଲା ।

ଯେଉଁ ଦିନ ହରଚନ୍ଦ୍ର ମକଦ୍ଦମା ଜିତି ଘରକୁ ଆସିଲେ, ସେଦିନ ତାଙ୍କ ଘରେ ଆନନ୍ଦର ଜୁଆର ଉଚ୍ଛୁଳିବାକୁ ଲାଗିଲା । ଖାଲି ବନମାଳୀର ଆଖିକୁ ନିଦ ଆସିଲା ନାହିଁ । ତା ଆରଦିନ ଗୁଡ଼ିଏ ବେଳେ ସେ ବିରସ ମନରେ ସେଇ ବଗିଚାର ବେଦୀ ଉପରେ ଯାଇ ବସିଲା, ଯେପରି ପୃଥିବୀରେ ଆଉ କାହାର କିଛି କ୍ଷତି ହୋଇ ନାହିଁ, ଏକା ସେଇ ତାର ପରମ ସମ୍ପଦ ହରାଇ ବସିଛି ।

ବେଳ ଗଡ଼ିଗଲା, ଛଅଟା ବାଜିଲା; କିନ୍ତୁ ହିମାଂଶୁ ଆସିଲା ନାହିଁ । ଗୋଟାଏ ଗଭୀର ଦୀର୍ଘ ନିଃଶ୍ୱାସ ପକାଇ ବନମାଳୀ ହିମାଂଶୁଙ୍କ

ଘରଅଡ଼କୁ ଅନାଇଲା । ଖୋଲା ଝରକାବାଟେ ଦେଖିପାରିଲା । ଅଳଗୃଣିରେ ହିମାଂଶୁର ସ୍କୁଲ ପିନ୍ଧା ଲୁଗା କାମିଜ ପଡ଼ିଛି । ନାନା ରକମର ଚଳପରଚଳ ଲକ୍ଷଣ ମିଳାଇ ସେ ଜାଣିପାରିଲା ଯେ ହିମାଂଶୁ ସ୍କୁଲରୁ ଆସିଲାଣି । ତୁକାର ନଳ ଛାଡ଼ିଦେଇ ସେ ବିଷଣ୍ଣମୁଖରେ ବଗିଚାର ଏପାଖ ସେପାଖ ହେବାକୁ ଲାଗିଲା । ସେ ଝରକାଅଡ଼େ ହଜାର ଥର ଅନାଇଲା, କିନ୍ତୁ ହିମାଂଶୁ ବଗିଚାକୁ ଆସିଲା ନାହିଁ ।

ରାତି ହୋଇ ସଞ୍ଜବତୀ ଲାଗିଲା । ବନମାଳୀ ଧୀରେ ଧୀରେ ହିମାଂଶୁ ଘର ଅଡ଼କୁ ଗଲା । ସେଦିନ ଭାରି ଗରମ ପଡ଼ିଥାଏ । ଗୋକୁଳଚନ୍ଦ୍ର ପିଣ୍ଡାରେ ବସି ବାୟୁ ସେବୁଛନ୍ତି । ବନମାଳୀକୁ ଦେଖିକରି ପଚାରିଲେ, "କିଏ ସେ ?"

ବନମାଳୀ ଚମକି ପଡ଼ିଲା, ସତେ ଯେପରି ଚୋରି କରିବାକୁ ଆସି ସେ ଧରା ପଡ଼ିଗଲା । ଅବୁକାବୁ ହୋଇ କହିଲା, "ମାମୁଁ ମୁଁ ।"

ମାମୁଁ କହିଲେ, "କୁଆଡ଼େ ଯାଉଚୁ ? ଘରେ କେହି ନାହାନ୍ତି ।"

ବନମାଳୀ ବଗିଚାକୁ ଫେରି ଆସି ପୁଣି ଚୁପକରି ରହିଲା ।

ରାତି ବେଶୀ ହୋଇଗଲା । ବନମାଳୀ ଦେଖିଲା ହିମାଂଶୁଙ୍କର ଘରର ଝରକାଗୁଡ଼ିକ ଗୋଟିକ ପରେ ଗୋଟିଏ କରି ବନ୍ଦ ହୋଇଗଲା; କବାଟ ଫାଙ୍କ ସେପାଖରୁ ଯେଉଁ ଦୀପର ଆଲୁଅ ଦେଖା ଯାଉଥିଲା, ସେ ମଧ୍ୟ କ୍ରମେ କ୍ରମେ ଲିଭିଗଲା । ଅନ୍ଧାର ବଗିଚାରେ ବସି ବନମାଳୀ ଭାବିଲା, ଯେପରି ହିମାଂଶୁଙ୍କ ଘରର ସମସ୍ତ କବାଟ ତା ଲାଗି ବନ୍ଦ ହୋଇଗଲା, କେବଳ ସେ ଏକୁଟିଆ ବାହାରେ ଅନ୍ଧାରରେ ପଡ଼ିରହିଲା ।

ତା ଆରଦିନ ସେ ଠିକ୍ ସମୟରେ ବଗିଚାକୁ ଆସି ବସିଲା । ଭାବିଲା ଆଜି ହୁଏତ ହିମାଂଶୁ ଆସିପାରେ । ସେ ସବୁଦିନ ଆସେ, ସେ ଯେ ଦିନେ ମଧ୍ୟ ନ ଆସି ଘରେ ରହିବ, ଏକଥା ସେ ବିଶ୍ୱାସ କରି ପାରିଲା ନାହିଁ । ଏ ବନ୍ଧନ ଯେ କେବେ ଛିଣ୍ଡିଯାଇ ପାରିବ, ସେ ଏକଥା ଦିନେ ହେଲେ ଭାବି ନ ଥିଲା । ସେ ଏପରି ନିଶ୍ଚିନ୍ତ ହୋଇ ଯାଇଥିଲା ଯେ, ଅଜ୍ଞାତରେ ନିଜର ସବୁ ସୁଖଦୁଃଖ ସେ ସେଇ ବନ୍ଧନ ଭିତରେ ଛନ୍ଦି ଦେଇଥିଲା । ଆଜି ଯେପରି ହଠାତ୍ ମନେ ହେଲା, ସେଇ ବନ୍ଧନଟି ଛିଣ୍ଡି ଯାଇଛି, କିନ୍ତୁ ଏପରି ଭାବରେ ଏତେ ଶୀଘ୍ର ଯେ ତାର ସର୍ବନାଶ ହୋଇଗଲା, ଏକଥା ସେ ମୋଟେ ବିଶ୍ୱାସ କରି ପାରିଲା ନାହିଁ ।

ତଥାପି କାଳେ ହିମାଂଶୁ ଦୈବାତ୍ କେଉଁଦିନ ଆସିପାରେ, ସେଇ ଆଶାରେ ବନମାଳୀ ଠିକ ସମୟରେ ବଗିଚାକୁ ଯାଇ ବସିବାରେ ହେଳା କଲା ନାହିଁ । କିନ୍ତୁ ଏପରି ଦୁର୍ଭାଗ୍ୟ ଯେ, ଯାହା ପ୍ରତ୍ୟହ ନିୟମିତ ଭାବରେ ସମ୍ଭବ ହେଉଥିଲା, ଆଜି ତାହା ଦିନେ ସୁଦ୍ଧା ଦୈବ କ୍ରମେ ସମ୍ଭବ ହୋଇ ପାରିଲା ନାହିଁ ।

ରବିବାରଦିନ ଭାବିଲା, ଅନ୍ତତଃ ଆଜି ସକାଳେ ମଧ୍ୟ ନିଶ୍ଚୟ ହିମାଂଶୁ ଆମ ଘରକୁ ଖାଇବାକୁ ଆସିବ । ପୁରାପୁରି ବିଶ୍ୱାସକରି ନ ପାରିଲେ ମଧ୍ୟ ଏକାବେଳକେ ନିରାଶ ହୋଇ ପାରିଲା ନାହିଁ । ସକାଳ ଆସିଲା, ଚାଲିଗଲା; ତଥାପି ସେ ଆସିଲା ନାହିଁ ।

ବନମାଳୀ ଭାବିଲା, "ଖାଇସାରି ନିଶ୍ଚୟ ଆସିବ ।" ଖାଇ ସାରିବା ପରେ ମଧ୍ୟ ସେ ଆସିଲା ନାହିଁ, ବନମାଳୀ ଭାବିଲା, "ବୋଧହୁଏ ଆଜି ଖାଇସାରି ଶୋଇପଡ଼ିଛି । ଉଠିକରି ଆସିବ ।" ହିମାଂଶୁର ନିଦ କେତେବେଳେ ଭାଙ୍ଗିଲା କେଜାଣି, କିନ୍ତୁ ବନମାଳୀର ଆଶା ଅପୂର୍ଣ୍ଣ ରହିଗଲା ।

ପୁଣି ସେଇ ସନ୍ଧ୍ୟାବେଳ ଆସିଲା, ରାତ୍ର ହେଲା । ହିମାଂଶୁଙ୍କ ଘରର କବାଟ ସବୁ ଗୋଟି ଗୋଟି କରି ବନ୍ଦ ହୋଇଗଲା, ଆଲୁଅ ଗୁଡ଼ିକ ମଧ୍ୟ ଲିଭି ଆସିଲା ।

ସୋମବାରଠାରୁ ରବିବାର ପର୍ଯ୍ୟନ୍ତ ସପ୍ତାହର ସାତଟା-ଯାକଦିନ ଏହିପରି ଗଡ଼ିଗଲା, ତଥାପି ତାର ଅଦୃଷ୍ଟ ପ୍ରସନ୍ନ ହେଲା ନାହିଁ । ଅଧିକ ଆଶାକରି ବସିବାକୁ ଆଉ ଗୋଟାଏ ଦିନ ବି ବାକୀ ରହିଲା ନାହିଁ । ନିରାଶ ହୋଇ ବନମାଳୀ ହିମାଂଶୁଙ୍କର ରୁଦ୍ଧ ଦ୍ୱାର ଅଟ୍ଟାଳିକା ଆଡ଼କୁ ଚାହିଁ ରହିଲା । ତା'ର ଅଶ୍ରୁଭରା କାତର ଚକ୍ଷୁ ଦୁଇଟି ସେଇ ଘର ଉଦ୍ଦେଶ୍ୟରେ ଏକ ମର୍ମଭେଦୀ ଅଭିମାନର ନାଲିଶ ପଠାଇ ଦେଲା ଏବଂ ଜୀବନର ସମସ୍ତ ବେଦନାକୁ କେବଳ ଗୋଟାଏ ମାତ୍ର ଅଭିସ୍ୱରରେ ପୁଞ୍ଜୀଭୂତ କରି କହିଲା, "ଦୟାମୟ !"



## ଚର ପ୍ରବାସୀ

ଭ୍ଲାଡ଼ିମିର୍ ସହରରେ ଅଇଭାନ୍ ଡମିଟ୍ରିକ୍ ଅକ୍ସିନଭ୍ ନାମରେ ଜଣେ ଅଳ୍ପ ବୟସ୍କ ବଣିକ ଥିଲେ । ତାର ନିଜର ଦୁଇଟି ଦୋକାନ ଥାଏ ଓ ଘରଟିଏ ଥାଏ ।

ଅକ୍ସିନଭ୍ ସୁଦୃଶ୍ୟ ବ୍ୟକ୍ତିଟିଏ । ମୁଣ୍ଡରେ ତାର ସୁନ୍ଦର କୁଞ୍ଚୁକୁଞ୍ଚିଆ ବାଳ, ସବୁବେଳେ ତାର କଥାରେ କୌତୁକ—ସଙ୍ଗୀତ ପ୍ରତି ତାର ବଡ଼ ଆଗ୍ରହ ଥିଲା । ଯେତେବେଳେ ସେ ନିହାତି ଟୋକା ଥିଲା, ସେତେବେଳେ ତାର କେତୋଟି ମନ୍ଦ ଅଭ୍ୟାସ ଥିଲା । କିନ୍ତୁ ବିଭା ହେବା ପରେ ସେଗୁଡ଼ିକ ସେ ପ୍ରାୟ ଛାଡ଼ି ଦେଲା ।

ଗ୍ରୀଷ୍ମଦିନ—ଅକ୍ସିନଭ୍ ଥରେ ନିଜ୍ନି ମେଳାକୁ ଯାଉଥିଲା—ସ୍ତ୍ରୀକୁ, ତା ପରିବାରକୁ ବିଦାୟ ଦେଇ ଯେତେବେଳେ ସେ ବାହାରିଲା, ସ୍ତ୍ରୀ ତାର ତାକୁ କହିଲା, "ଅଇଭାନ୍ ଡମିଟ୍ରିକ୍, ଆଜି ତୁମେ ବାହାର ହୁଅ ନାହିଁ—ତୁମ ବିଷୟରେ ବଡ଼ ଖରାପ ସ୍ୱପ୍ନଟେ ଦେଖିଛି ।"

ଅକ୍‌ସିନଭ୍ ହସି ପକାଇ କହିଲା, "ତୁମର ଭୟ ହେଉଛି ମୁଁ ମେଳାକୁ ଗଲେ···ନା ?"

ସ୍ତ୍ରୀ ତାର କହିଲା, "କଣ ଭୟ ହେଉଛି କହି ପାରିବିନି; ଏତିକି କେବଳ ଜାଣେ ଯେ ଖରାପ ସ୍ୱପ୍ନଟେ ଦେଖିଲି—ଦେଖିଲି ତୁମେ ସହରରୁ ଫେରି ଯେତେବେଳେ ଟୋପିଟା କାଢ଼ି ଦେଲ, ତୁମ ବାଳତକ ଏକାବେଳେ ଧଳା ହୋଇଯାଇଛି ।"

ଅକ୍‌ସିନଭ୍ ହସିଲା—କହିଲା, "ସେ ତ ମଙ୍ଗଳ ଚିହ୍ନ । ଦେଖ, ମେଳାରେ ମୋର ସବୁ ଜିନିଷତକ ବିକି ତୁମ ପାଇଁ କିଛି ଉପହାର ଅଣୁଛି କି ନାହିଁ ।"

ତା ପରେ ସେ ପରିବାରଠୁ ବିଦାୟ ନେଇ ଗାଡ଼ିରେ ବାହାରି ପଡ଼ିଲା । ଅଧବାଟ ଗଲାପରେ ସେ ତାର ଜଣେ ଚିହ୍ନା ବଣିକକୁ ଭେଟିଲା; ରାତିରେ ଗୋଟିଏ ହୋଟେଲରେ ଦୁଇ ଜଣ ଯାକ ଉଠିଲେ । ଏକାଠି ଚା ଖାଇ ଲଗାଲଗି ଦୁଇଟି କୋଠରୀକୁ ଶୋଇବାକୁ ଗଲେ । ବେଶି ବେଳ ପର୍ଯ୍ୟନ୍ତ ଶୋଇ ରହିବା ଅକ୍‌ସିନଭ୍‌ର ଅଭ୍ୟାସ ନୁହେଁ । ଥଣ୍ଡା ଥାଉ ଥାଉ ଯାତ୍ରା କରିବାକୁ ସ୍ଥିର କରି ସେ ସିନ୍ଦୁରା ଫାଟିବା ପୂର୍ବରୁ ଗାଡ଼ିବାଲକୁ ଉଠାଇ ଘୋଡ଼ା ଯୋଚିବାକୁ କହିଲା ।

ହୋଟେଲର ପଛ ପଟେ ଗୋଟିଏ ଛୋଟ ଘରେ ମାଲିକ ରହେ । ସେ ତା ପାଖକୁ ଯାଇ ହୋଟେଲରେ ରହିବା ଖର୍ଚ୍ଚ ଦେଇ ସାରି ପୁଣି ଯାତ୍ରା ଆରମ୍ଭ କଲା ।

ପ୍ରାୟ ପଚିଶ ମାଇଲ ଗଲାପରେ ସେ ଘୋଡ଼ାକୁ ଖୁଆଇବାକୁ ରହିଲା । ଅକ୍‌ସିନଭ୍ ହୋଟେଲର ବାଟଘରେ କିଛି ସମୟ ଅପେକ୍ଷା କଲା, ତାପରେ ଆଗ ଅଳିନ୍ଦରୁ ଓହ୍ଲାଇ ପଡ଼ି ସାମୋଭର ଗରମ

କରିବାକୁ ଆଦେଶ ଦେଇ ନିଜେ ନିଜର ବୀଣାଟି ବାହାର କରି ବଜାଇବାକୁ ଲାଗିଲା ।

ହଠାତ୍ ଘଣ୍ଟା ବଜାଇ ବଜାଇ ଗୋଟିଏ ଟ୍ରେନ୍ ଆସି ପହଞ୍ଚିଲା । ସେଥିରୁ ଜଣେ ସରକାରୀ କର୍ମଚାରୀ ଓହ୍ଲାଇ ପଡ଼ିଲେ—ତାଙ୍କ ପଛେ ପଛେ ଦୁଇଜଣ ସୈନିକ; ସେ ଅକ୍ସିନଭ୍ ପାଖକୁ ଆସି ସେ କିଏ ସେ, କୁଆଡ଼ୁ ଆସିଛି ଇତ୍ୟାଦି ନାନାପ୍ରକାର ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ । ଅକ୍ସିନଭ୍ ଠିକ ଠିକ କରି ଉତ୍ତର ଦେଲା । ତାପରେ କହିଲା, "ମୋ ସଙ୍ଗେ ଟିକେ ଚାହା ଖାଇବନି ?" କିନ୍ତୁ କର୍ମଚାରୀ ଜଣକ ଜେରା କରିବାକୁ ଲାଗିଲେ । ପଚାରିଲେ, "କାଲି ରାତିଟା ତମେ କେଉଁଠାରେ କଟାଇଲ ? ଏକା ଥିଲ ନା ସାଙ୍ଗରେ ଆଉ କିଏ ବଣିକ ଥିଲା ? ତୁମେ ଆଜି ସକାଳେ ସେଇ ଆର ବଣିକଟିକୁ ଭେଟିଥିଲ କି ? ସକାଳ ହେଲା ଆଗରୁ ତୁମେ କାହିଁକି ହୋଟେଲ ଛାଡ଼ି ବାହାରି ଆସିଲ ?"

ତାଙ୍କର ଏପରି ପ୍ରଶ୍ନରେ ଅକ୍ସିନଭ ଅଣ୍ଟୁଆଶ୍ଚର୍ଯ୍ୟ ହୋଇ ଯାହା ଘଟିଥିଲା ସେ ସବୁକଥା ସେ ବର୍ଣ୍ଣନା କଲା; ଶେଷରେ କହିଲା, "ମୁଁ ଚୋର କି ଡକାଏତ ନା କଣ ଯେ ମତେ ଏତେ ଜେରା କରୁଛ ? ମୋ ନିଜ ବ୍ୟବସାୟରେ ମୋ ବାଟରେ ମୁଁ ଯାଉଛି, ମତେ ପଚାରିବାର ତ କିଛି ଆବଶ୍ୟକ ନାହିଁ ।"

ତା ପରେ କର୍ମଚାରୀ ଜଣକ ସୈନ୍ୟ ଦୁଇଟିଙ୍କୁ ଡାକି କହିଲେ, "ମୁଁ ଏ ଜିଲ୍ଲାର ପୁଲିସ ଅଧ୍ୟକ୍ଷ । ତୁମକୁ ଏତେଥର ପଚାରୁଛି କାହିଁକି ନା, ଯେଉଁ ବଣିକ ସଙ୍ଗେ ତମେ କାଲିରାତିରେ ଥିଲ, ତାଙ୍କ ତଣ୍ଟିକଟା ହୋଇ ସେ ପଡ଼ିଛନ୍ତି—ତୁମର ଜିନିଷପତ୍ର ଆମେ ନିଶ୍ଚୟ ଦେଖିବୁ ।"

ସେମାନେ ଘରେ ପଶିଲେ । ସୈନ୍ୟମାନେ ଓ ପୁଲିସ କର୍ମଚାରୀ ଅକ୍ସିନଭର କୁକୁରୀ-ପତ୍ର ଖୋଲି ପକାଇ ପରୀକ୍ଷା କଲେ । ହଠାତ୍ କର୍ମଚାରୀଟି ଗୋଟିଏ ମୁଣିରୁ ଛୁରୀଟିଏ ବାହାର କରି ପକାଇ ଚିତ୍କାର କରି ଉଠିଲେ—"ଏହି ଛୁରୀ କାହାର ?"

ଅକ୍ସିନଭ ତାଂ ମୁଣିରୁ ରକ୍ତାକ୍ତ ଛୁରୀଟେ ବାହାରିବାର ଦେଖି ଭୀତ ହୋଇ ପଡ଼ିଲା । ଏହି ଛୁରୀକୁ ରକ୍ତ କେଉଁଠାରୁ ଆସିଲା ?

ଅକ୍ସିନଭ ଉତ୍ତର ଦେବାକୁ ଚେଷ୍ଟା କଲା—କିନ୍ତୁ ପଦେ ହେଲେ କଥା ଉଚ୍ଚାରଣ କରି ପାରିଲା ନାହିଁ । ଥଙ୍ଗେଇ ଥଙ୍ଗେଇ ଏତିକି ମାତ୍ର କହିଲା, "ମୁଁ—ମୁଁ ତ ଜାଣେ—ନି—ଏହି ତ ମୋର ନୁହେଁ ।" ତାପରେ ପୁଲିସ କର୍ମଚାରୀ କହିଲେ, "ଆଜି ସକାଳେ ଦେଖାଗଲା ସେ ବଣିକଟି ଶେଯରେ ମରି—ପଡ଼ିଛି—ତା ବେକ କଟା ହୋଇଛି, ତୁମେଇ କେବଳ ଏହା କରିଥାଇପାର । ଅନ୍ୟ କେହି ନୁହେଁ—ଘର ଦ୍ୱାର ଭିତରୁ ବନ୍ଦ ଥିଲା ଓ ତୁମ ବ୍ୟତୀତ ଅନ୍ୟ କେହି ସେଇଠି ନ ଥିଲେ । ତୁମ ମୁଣିରେ ଏଇ ରକ୍ତାକ୍ତ ଛୁରୀଟି ନିଶ୍ଚୟ ଥିଲା । ତମ ମୁହଁ, ତମ ଭାବଭଙ୍ଗୀରୁ ଧରା ପଡ଼ିଯାଉଛି ସବୁକଥା । ତାଙ୍କୁ କିମିତି ମାରିଲ ଆଉ କେତେ ଟଙ୍କା ଚୋରୀ କରିଛ କହ ।"

ଅକ୍ସିନଭ ଈଶ୍ୱରଙ୍କ ଦୋହାଇ ଦେଇ କହିଲା ଯେ, ସେ ହତ୍ୟା କରିନି—ଏକାଠି ଚାହା ଖାଇଲାପରେ ସେ ଆଉ ବଣିକଟିକୁ ଆଦୌ ଦେଖିନି । ତା'ଠାରେ ତା ନିଜର ଅଠହଜାର ରୁବଲ୍ ବ୍ୟତୀତ ଆଉ କିଛି ପଇସା ନାହିଁ—ଆଉ ରକ୍ତାକ୍ତ ଛୁରୀଟା ତା'ର ନୁହେଁ ।...ତା କଣ୍ଠ ଭାଙ୍ଗି ପଡ଼ିଥିଲା—ମୁହଁଟା ତାର କଳା ପଡ଼ିଯାଇଥିଲା—ଦୋଷ କରିଥିଲା ପରି ସେ ଭୟରେ ଥରିବାକୁ ଲାଗିଲା ।

ପୁଲିସ କର୍ମଚାରୀ, ସୈନ୍ୟଦୁହିଙ୍କୁ ଅକ୍‌ସିନଭଙ୍କୁ ବାନ୍ଧି ପକାଇ ସରକାରୀ ଗାଡ଼ିରେ ଭର୍ତ୍ତିକରି ଦେବାକୁ ଆଦେଶ ଦେଲେ । ସେମାନେ ଯେତେବେଳେ ତାର ଗୋଡ଼ ଦୁଇଟିକୁ ବାନ୍ଧି ଦେଇ ପୁଲିସ ଗାଡ଼ି ଭିତରେ ତାକୁ ପକାଇ ଦେଲେ, ଅକ୍‌ସିନଭ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ମେଲାଇ କ୍ରୁସ ଚିହ୍ନ କରି କାନ୍ଦିବାକୁ ଲାଗିଲା । ତା ଟଙ୍କାପଇସା, ଜିନିଷ-ପତ୍ର ତା ଠାରୁ ନେଇଗଲେ, ସବୁଠାରୁ ପାଖରେ ଥିବା ସହରକୁ ପଠାଇ ସେଠା ଜେଲରେ ତାକୁ ଆବଦ୍ଧ କରି ରଖିଲେ । ଭ୍ଲାଡମିରରେ ତାର ସ୍ୱଭାବ-ଚରିତ୍ର ବିଷୟରେ ଅନୁସନ୍ଧାନ କରାଯାଇଥିଲା । ସେ ସହରର ବଣିକ ଓ ଅନ୍ୟାନ୍ୟ ଲୋକେ କହିଲେ ଯେ, ସେ ଆଗେ ମଦ୍ୟପାନ କରି ସମୟ ନଷ୍ଟ କରୁଥିଲା, କିନ୍ତୁ ବେଶ ଭଲଲୋକ ଥିଲା ସବୁବେଳେ । ତାପରେ ହେଲା ବିଚାର । ରିୟାଜାନର ଜଣେ ବଣିକଙ୍କ ହତ୍ୟା କରିବା ଓ ତାର କୋଡ଼ିଏ ହଜାର ରୁବଲ ଚୋରି କରିବା ଅପରାଧରେ ତାକୁ ଅଭିଯୁକ୍ତ କରାହୋଇଥିଲା ।

ସ୍ତ୍ରୀ ତାର ହତାଶାରେ ଭାଙ୍ଗି ପଡ଼ିଲା । ଏ ସବୁଥିରୁ କଣ ବିଶ୍ୱାସ କରିବ ସେ ଭାବି ପାରିଲା ନାହିଁ । ପିଲାଗୁଡ଼ିକ ତାର ଖୁବ୍ ଛୋଟ ଛୋଟ ହୋଇଥାନ୍ତି; ଗୋଟିଏ ଦୁଧ-ଖିଆ ପିଲା ଥାଏ । ସେ ସମସ୍ତଙ୍କୁ ସାଙ୍ଗରେ ନେଇ ତାର ସ୍ୱାମୀ ଯେଉଁ ସହରରେ ଜେଲରେ ଥିଲେ ସେଠାକୁ ଗଲା ସେ । ପ୍ରଥମେ ତାକୁ ତା ସ୍ୱାମୀ ସଙ୍ଗେ ଭେଟିବାକୁ ଅନୁମତି ଦିଆ ହେଲା ନାହିଁ; କିନ୍ତୁ ଅନେକ ଅନୁରୋଧ କଲାପରେ ସେ କର୍ମଚାରୀଙ୍କଠାରୁ ଅନୁମତି ପାଇଲା । ତାକୁ ଅବଗିନ୍ ପାଖକୁ ନେଇଗଲେ । ଯେତେବେଳେ ସେ ତାର ସ୍ୱାମୀଙ୍କୁ ଦେଖିଲା— ଜେଲ ପୋଷାକ ପିନ୍ଧିଛନ୍ତି, ବେଡ଼ି ଲାଗିଛି, ଚୋର ଡକାୟତ ପ୍ରଭୃତି ଯେତେପ୍ରକାର ଅପରାଧୀଙ୍କ ସଙ୍ଗେ ଏକାଠି ବନ୍ଦୀ ହୋଇ ପଡ଼ିଛନ୍ତି—

ସେତେବେଳେ ସେଇ ଦୁଃଖରେ ତାର ଚେତା ବୁଡ଼ିଗଲା— ଅନେକ ସମୟ ପର୍ଯ୍ୟନ୍ତ ଚେତା ଫେରିଲା ନାହିଁ । ତାପରେ ସେ ତାର ପିଲାଙ୍କ ପାଖକୁ ଟାଣିଆଣି ଅଇଭାନ୍ ପାଖରେ ବସିଲା, ଘରକଥା ସବୁ କହିଲା, ଅଜ ତାକୁ ପଚାରିଲା କଣ ହେଲା ବୋଲି । ଅଇଭାନ୍ ସବୁକଥା ତାକୁ କହିଲା । ତାପରେ ସେ ପଚାରିଲା, "ବର୍ତ୍ତମାନ ଆମେ କଣ କରିପାରିବା କହିଲ—"

"ଜଣେ ନିର୍ଦ୍ଦୋଷ ବ୍ୟକ୍ତିକୁ ଯେପରି ହତ୍ୟା କରି ନ ଯାଏ, ସେଥିପାଇଁ ଜାରଙ୍କୁ ଅବେଦନ କରିବା ।" ତା ସ୍ତ୍ରୀ କହିଲା ଯେ, ସେ ଗୋଟିଏ ଅବେଦନ ପତ୍ର ପଠାଇଥିଲା । କିନ୍ତୁ ସେ ଅବେଦନ ମଞ୍ଜୁର ହୋଇନି । ଅକ୍ସିନଭ୍ କିଛି ଉତ୍ତର ନ ଦେଇ ଭଗ୍ନ ହୃଦୟରେ ଚୁହିଁ ରହିଲା ।

ତାପରେ ତା ସ୍ତ୍ରୀ କହିଲା, "ତୁମ ବାଳ ଧଳା ହୋଇଯିବାର କଥା ମାହାଳିଆ ସ୍ୱପ୍ନ ଦେଖି ନ ଥିଲି, ତୁମର ମନେ ଅଛି ନା ? ସେ ଦିନ ବାହାରିବାର ନ ଥିଲା ତମର—" ଅଇଭାନ ନିଜ ମୁଣ୍ଡବାଳ ଗୁଡ଼ିକ ଭିତରେ ଅଙ୍ଗୁଠି ଚଳାଇ ଚଳାଇ କହିଲା, "ଭନ୍ୟା, ପ୍ରିୟତମ ମୋର—ସ୍ତ୍ରୀକୁ ତମର ସତ କହ । ତୁମେ ଏ କାଣ୍ଡ କରି ନାହିଁ ?"

ଅକ୍ସିନଭ୍ କହିଲା, "ତା ହେଲେ ତୁମେ ମଧ୍ୟ ମତେ ସନ୍ଦେହ କରୁଛ ?" ତା ପରେ ନିଜ ମୁହଁରେ ହାତ ଘୋଡ଼ାଇ ଦେଇ କାନ୍ଦିବାକୁ ଅରମ୍ଭ କଲା । ତା ପରେ—ଜଣେ ସିପାହୀ ଅସି ସ୍ତ୍ରୀ, ପିଲାଙ୍କୁ ଚାଲିଯିବାକୁ ହେବ ବୋଲି କହିଲା—ଅକ୍ସିନଭ୍ ଶେଷଥର ପାଇଁ ତାର ସ୍ତ୍ରୀ ଓ ସନ୍ତାନମାନଙ୍କୁ ବିଦାୟ ଦେଲା ।

ସେମାନେ ଗଲାପରେ ଅକ୍ସିନଭ୍ ଯାହା ସବୁ ଶୁଣିଥିଲା, ସେ ସବୁ ମନେ ପକେଇଲା । ମନେ ପଡ଼ିଲା ତାର, ତା ସ୍ତ୍ରୀ ମଧ୍ୟ

ତାକୁ ସନ୍ଦେହ କରେ । ମନକୁ ମନ କହିଲା, 'ମନେ ହେଉଛି, ଈଶ୍ୱର କେବଳ ଜଣେ ସତ ଜାଣି ପାରନ୍ତି; କେବଳ ତାଙ୍କୁ ହିଁ ଆମର ପ୍ରାର୍ଥନା କରିବା କଥା, ଆଉ ଖାଲି ତାଙ୍କଠାରୁ ହିଁ ଦୟା ଆଶା କରିହେବ ।'

ଅକ୍‌ସିନଭ୍ ଆଉ ଆବେଦନପତ୍ର ଲେଖିଲା ନାହିଁ । ସମସ୍ତ ଆଶା ଛାଡ଼ିଦେଇ ସେ ଖାଲି ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବାକୁ ଲାଗିଲା ।

ଅକ୍‌ସିନଭ୍‌କୁ ବେତ୍ରାଘାତ ଓ ଖଣିକୁ ନିର୍ବାସନ ଦଣ୍ଡ ଦିଆଗଲା । ଅନେକ ଚାବୁକ ମାଡ଼ ଦିଆଗଲା । ସେଇ ଚାବୁକମାଡ଼ର ଘା'ଗୁଡ଼ିକ ଶୁଖିଗଲା ପରେ ତାକୁ ଅନ୍ୟାନ୍ୟ ଅସାମୀଙ୍କ ସହିତ ସାଇବେରିଆକୁ ପଠାଇ ଦିଆଗଲା ।

ଛବିଶ ବର୍ଷକାଳ ସାଇବେରିଆରେ ଅକ୍‌ସିନଭ୍ ଅସାମୀ ରୂପେ ରହିଲା । ତାର ମୁଣ୍ଡର ବାଳଗୁଡ଼ିକ ବରଫ ପରି ଧଳା ହୋଇଗଲା । ମୁହଁରେ ଲମ୍ବା ଲମ୍ବା ଧଳା ଦାଢ଼ି ସବୁ ହୋଇଗଲା । ତାର ସମସ୍ତ ସୁଖ ଉଭେଇ ଗଲା; ସେ ବଙ୍କା ହୋଇଗଲା; ଚାଲି ତାର ମନ୍ଥର ହେଲା । ଅଳ୍ପ କଥା କହେ ସେ, କେବେହେଲେ ହସେ ନାହିଁ— କିନ୍ତୁ ଅନେକ ସମୟରେ ପ୍ରାର୍ଥନା କରେ ।

ଜେଲରେ ଅକ୍‌ସିନଭ୍ ଜୋତା ତିଆରି କରିବା ଶିଖିଲା, ଆଉ ତାଦ୍ୱାରା କିଛି ଅର୍ଥ ଉପାର୍ଜ୍ଜନ କରି ସେଥିରେ ଋଷିମାନଙ୍କର ଜୀବନୀ ଖଣ୍ଡେ କିଣିଲା । ବନ୍ଦୀ ଗୃହରେ ଯଥେଷ୍ଟ ଆଲୋକ ଥିଲେ ସେ ଏଇ ବହିଟି ପଢ଼େ; ରବିବାର ଦିନ ସେ ଜେଲ ଗୀର୍ଜ୍ଜାରେ ବାଇବଲ୍‌ର ପାଠ୍ୟାଂଶମାନ ନିୟମିତ ପଢ଼େ ଓ ସମବେତ ସଙ୍ଗୀତ ପ୍ରାର୍ଥନାରେ ଯୋଗ ଦିଏ; କାରଣ କଣ୍ଠ ତାର ସେତେବେଳେ ବି ବେଶ୍ ମଧୁର ଥାଏ ।

ଜେଲର କର୍ତ୍ତୃପକ୍ଷ ଅକ୍‌ସିନଭ୍‌ର ବିନୀତ ପ୍ରକୃତି ହେତୁ ତାଙ୍କୁ ସ୍ନେହ କରୁଥିଲେ । ବନ୍ଦୀ ସଙ୍ଗୀମାନେ ତାଙ୍କୁ ଭକ୍ତି କରୁଥିଲେ । ସେମାନେ ତାଙ୍କୁ "ବୁଢ଼ାବାପା" ବୋଲି ନ ହେଲେ "ଋଷି" ବୋଲି ଡାକୁଥିଲେ । ତେବେ ଯଦି କେଉଁଥି ପାଇଁ ସେମାନେ ଜେଲ୍ କର୍ତ୍ତୃପକ୍ଷଙ୍କ କତ୍ତୁ ଅବେଦନ କରିବାକୁ ଚାହୁଁଥିଲେ, ତେବେ ସେମାନେ ଅକ୍‌ସିନଭ୍‌କୁ ସେମାନଙ୍କର ପ୍ରତିନିଧି କରି ପଠାଉଥିଲେ । ବନ୍ଦୀମାନଙ୍କ ମଧ୍ୟରେ କଳହ ହେଲେ, ସେମାନେ ମୀମାଂସା କରି ସବୁ ପୁଣି ଠିକ୍ କରି ଦେବାକୁ ତା ପାଖକୁ ଆସୁଥିଲେ ।

ଘରର କୌଣସି ଖବର ଅକ୍‌ସିନଭ୍ ପାଖରେ ପହଞ୍ଚେ ନାହିଁ । ତାର ସ୍ତ୍ରୀ ସନ୍ତାନ ବଞ୍ଚିଛନ୍ତି କି ନାହିଁ, ତା ମଧ୍ୟ ସେ ଜାଣି ପାରୁ ନ ଥିଲା ।

ଦିନେ ନୂଆ ହୋଇ ଦଳେ ଆସାମୀ ଆସି ପହଞ୍ଚିଲେ । ସନ୍ଧ୍ୟାବେଳେ ପୁରୁଣା ବନ୍ଦୀମାନେ ସେମାନଙ୍କୁ ଘେରିଦେଇ ସେମାନେ କେଉଁ ଗାଁରୁ, କେଉଁ ସହରରୁ ଆସିଛନ୍ତି, କେଉଁଥି ପାଇଁ ଦଣ୍ଡ ପାଇଛନ୍ତି, ଇତ୍ୟାଦି ପଚାରିବାକୁ ଲାଗିଲେ । ସମସ୍ତଙ୍କ ସଙ୍ଗେ ଅକ୍‌ସିନଭ୍ ବି ନବାଗତଙ୍କ ମଧ୍ୟରେ ବସିଥାଏ, ଆଉ ଭଗ୍ନହୃଦୟରେ ସବୁ ଶୁଣୁଥାଏ ।

ନୂଆ ଆସାମୀଙ୍କ ଭିତରୁ ଷାଠିଏ ବର୍ଷର ଡେଙ୍ଗା, ଟାଣୁଆ, ପାତଳା, ପାଚିଲା ଦାଢ଼ିବାଲା ଲୋକଟି ତାର ବନ୍ଦୀ ହେବାର କାରଣ କହୁଥିଲା ।

'ଶୁଣ ବନ୍ଧୁମାନେ—ସ୍ଲେଜ୍ ଗାଡ଼ିରେ ଲାଗିଥିବା ଗୋଟେ ଘୋଡ଼ା କେବଳ ମୁଁ ନେଇ ଯାଇଥିଲି । ସେଥିପାଇଁ ମତେ ଗିରଫ କରି ଚୋରିରେ ଅଭିଯୁକ୍ତ କରିଥିଲେ । ମୁଁ କହିଲି ଘୋଡ଼ାଟିକୁ ମୁଁ ନେଇଥିଲି, ଟିକେ ଚଢ଼ିଲି ଘରକୁ ଯିବାକୁ, ଆଉ ତାପରେ

ଛାଡ଼ ଦେଇଥିଲି, ଆଜି ତା ଛଡ଼ା ସେ ସ୍ନେଜ୍ ଗାଈର ଗୃହକ ମୋ ନିଜର ଜଣେ ବନ୍ଧୁ । ତେଣୁ ବୟୁରେଲ୍ 'କିଛି' ଦୋଷ ନାହିଁ— ସେମାନେ କହିଲେ, "ନା, ତୁମେ ଚେଷ୍ଟା କରିଛ ।" କିନ୍ତୁ କେଉଁଠାରେ କିପରି ଚେଷ୍ଟା କରିଛି ତା କହି ପାରିଲେ ନାହିଁ । ଥରେ କିନ୍ତୁ ବାସ୍ତବିକ୍ ମୁଁ ବଡ଼ ଅନ୍ୟାୟ କରିଥିଲି । ଆଜି ସେଇ ଅଧିକାରରେ ମୋର ଅନେକ ଦିନ ଆଗରୁ ଏଠାକୁ ଆସିବା କଥା; କିନ୍ତୁ ସେଥର ମୁଁ ଧରାପଡ଼ିଲି ନାହିଁ । ଅଥଚ ବର୍ତ୍ତମାନ ତୁଚ୍ଛାକୁ ମତେ ଏଠାକୁ ପଠାଇ ଦେଲେ···ଅରେ, ମୁଁ ସବୁ ତୁମକୁ ମିଛ କହୁଛି ମ । ମୁଁ ଯୁଆ ଆଗରୁ ସାଇବେରିଅକୁ ଆସିଥିଲି କିନ୍ତୁ ବେଶୀ ଦିନ ଏଠାରେ ରହି ନାହିଁ ।"

କିଏ ଜଣେ ପଚାରିଲା, "ତମେ କେଉଁଠାରୁ ଆସିଛ ?"

"ଭ୍ଲାଡ଼ିମିରରୁ । ମୋର ପରିବାର ସେଇ ସହରରେ । ମୋ ନାଁ ମାକାର । ଲୋକେ ମତେ ସେମ୍ୟୋନିଚ୍ ବୋଲି ବି ଡାକନ୍ତି ।"

ଅକ୍ସିନଭ୍ ମୁଣ୍ଡ ଉଠାଇ କହିଲା, "ଅଚ୍ଛା ସେମ୍ୟୋନିଚ୍— ଭ୍ଲାଡ଼ିମିରର ଅକ୍ସିନଭ୍ ବଣିକଙ୍କ ପରିବାର କଥା କିଛି ଜାଣିଛ— ସେମାନେ ସମସ୍ତେ ବଞ୍ଚିଛନ୍ତି ତ ?"

"ଜାଣିଛି ! ଅଲବତ୍ ଜାଣିଛି—ଅକ୍ସିନଭ୍ ବେଶ୍ ବଡ଼ଲୋକ, ବର୍ତ୍ତମାନ ଯଦିଓ ତା ବାପା ସାଇବେରିଆରେ; ଆମରି ପରି ପାପୀ ସେ ବୋଧହୁଏ । ଅଚ୍ଛା ବୁଢ଼ା ଅଜା, ତୁମେ ଏଠାକୁ କିପରି ଆସିଲ ?"

ଅକ୍ସିନଭ୍ ତାର ଦୁର୍ଭାଗ୍ୟ କଥା କହିବାକୁ ଚାହିଁଲା ନାହିଁ । ଖାଲି ଦୀର୍ଘ ନିଶ୍ୱାସଟିଏ ପକାଇ କହିଲା, "ମୋ ପାପ ପାଇଁ ମୁଁ ଗତ ଛବିଶ ବର୍ଷ ହେଲା ଜେଲ୍‌ରେ ଅଛି ।" ମାକାର୍ ସେମ୍ୟୋନିଚ୍ ପଚାରିଲେ, "କି ପାପ ?"

ଅକ୍‌ସିନଭ୍ ଉତ୍ତରରେ କିଛି ଏତିକି ମାତ୍ର କହିଲା, "ଥାଉ ଥାଉ—ମୁଁ ହୁଏତ ଏହି ଦଣ୍ଡର ଯୋଗ୍ୟ ହୋଇଥିବି—" ସେ ଆଉ କିଛି କହି ନ ଥାନ୍ତା କିନ୍ତୁ ତାର ସଙ୍ଗୀମାନେ ନବାଗତମାନଙ୍କୁ, ଅକ୍‌ସିନଭ୍ କିପରି ସାଇବେରିଅକୁ ଆସିଲା; କିପରି କିଏ ଜଣେ, ଗୋଟିଏ ବଣିକକୁ ମାରି ପକାଇ ଅକ୍‌ସିନଭ୍‌ର ଜିନିଷ ପତ୍ର ଭିତରେ ଛୁରୀଟା ରଖି ଦେଇଥିଲା, ଆଉ ଅକ୍‌ସିନଭ୍ କିପରି ଅନ୍ୟାୟରେ ଦଣ୍ଡିତ ହୋଇଥିଲା—କହିଦେଲେ ।

ମାକାର୍ ସେମ୍ୟୋନିଚ୍ ଯା ଶୁଣିଲାକ୍ଷଣି ଅକ୍‌ସିନଭ୍ ଅଡ଼କୁ ଚାହିଁ, ତାର ଆଣ୍ଠୁ ଥାପୁଡ଼େଇ ଚିତ୍କାର କରି କହିଲା, "ବା—ବା, ବଡ଼ ଆଶ୍ଚର୍ଯ୍ୟ କଥା । ସତେ ବଡ଼ ଆଶ୍ଚର୍ଯ୍ୟ କଥା ! କିନ୍ତୁ ତମେ କେଡ଼େ ବୁଢ଼ା ହୋଇଯାଇଛ ।"

ଅନ୍ୟମାନେ ପଚାରିଲେ । ସେ କାହିଁକି ଏତେ ଆଶ୍ଚର୍ଯ୍ୟ ହୋଇଗଲା—ଯା ପୂର୍ବରୁ ସେ କଣ ଅକ୍‌ସିନଭ୍‌କୁ ଦେଖିଥିଲା ବୋଲି, କିନ୍ତୁ ମାକାର୍ ସେମ୍ୟୋନିଚ୍ କିଛି ଉତ୍ତର ଦେଲା ନାହିଁ । ଖାଲି ଏତିକି କହିଲା, "ବଡ଼ ଆଶ୍ଚର୍ଯ୍ୟ କଥା ଭାଇ, ଆମେ ଦୁହେଁ ଏଠି ଭେଟିଲୁ ।"

ତାର ଏ ସବୁ କଥା ଶୁଣି ଅକ୍‌ସିନଭ୍ ଆଶ୍ଚର୍ଯ୍ୟ ହୋଇ ଭାବିବାକୁ ଲାଗିଲା—ଏଇ କଣ ସେହି ବଣିକକୁ ମାରିଥିଲା କି ? ତେଣୁ ସେ କହିଲା, "ସେମ୍ୟୋନିଚ୍, ତୁମେ ବୋଧହୁଏ ଘଟଣାଟା ଶୁଣିଥିବ କିମ୍ବା ତମେ ସତେ ଅଗରୁ ଦେଖିଥିବ !"

"ନ ଶୁଣି କୁଆଡ଼େ ଯିବ ? ଦୁନିଆଟା ଖାଲି ଜନରବରେ ପୂର୍ଣ୍ଣ । କିନ୍ତୁ ସେ କେତେ କାଳର କଥା, ମୁଁ ଯାହାସବୁ ଶୁଣିଥିଲି ସବୁ ଭୁଲିଗଲିଣି ।"

ଅକ୍‌ସିନଭ୍ ପଚାରିଲା, "ତୁମେ ବୋଧହୁଏ ଶୁଣିଛ କିଏ ସେ ବଣିକକୁ ମାରିଲା ?"

ମାକାର୍ ସେମ୍ୟୋନିଚ ହସି ହସି ଉତ୍ତର ଦେଲା, "ଯାହା ମୁଣିରୁ ଛୁରୀ ବାହାରିଥିବ ସେଇ ନିଶ୍ଚୟ ମାରିଥିବ । ଯଦି ଅଉ କେହି ସେ ଛୁରୀ ତା ବୁକୁଚୂପଳରେ ଲୁଚାଇଥିଲା, ତେବେ ଧରା ନ ପଡ଼ିଲା ପର୍ଯ୍ୟନ୍ତ ସେ ଦୋଷୀ ନୁହେଁ—ତୁମ ମୁଣ୍ଡତଳେ ମୁଣିଟା ଥାଉ ଥାଉ ତା ଭିତରେ କିଏ କିପରି ଛୁରୀଟା ପୂରାଇ ଦେବ ? କେହି ସେପରି କରିଥିଲେ ତୁମ ନିଦ ତ ନିଶ୍ଚେ ଭାଙ୍ଗି ଯାଇଥାନ୍ତା ।"

ଅକ୍‌ସିନଭ୍ ଯେତେବେଳେ ଏ ସବୁ କଥା ଶୁଣିଲା, ସେ ନିଶ୍ଚିତ ଭାବରେ ମନେକଲା ଯେ ସେଇ ଲୋକଟା ବଣିକକୁ ହତ୍ୟା କରିଛି । ସେ ସେଠାରୁ ଉଠି ଚାଲିଗଲା । ସେ ଦିନ ସାରାରାତି ଅକ୍‌ସିନଭ୍‌ର ଆଖିରେ ନିଦ ନାହିଁ । ତା ମନରେ ବଡ଼ ଦୁଃଖ ହେଲା —ନାନାପ୍ରକାର ଛବି ମନଭିତରେ ନାଚିବାକୁ ଲାଗିଲା । ସ୍ତ୍ରୀକୁ ଛାଡ଼ି ମେଳାକୁ ଗଲାବେଳେ ସେ ଯେପରି ଦିଶୁଥିଲା, ସେ ଛବି ଆଖି ଆଗରେ ଖେଳିଗଲା—ସେ ଯେପରି ତା ଆଗରେ ଠିଆ ହୋଇଛି—ତା ମୁହଁ, ତା ଆଖି ସବୁ ଦିଶିଲା । ତାର କଥାବାର୍ତ୍ତା, ତାର ହସ ଯେପରି ସେ ଶୁଣି ପାରୁଛି । ତା ପରେ ସେ ଦେଖିଲା ତାର ସେ ସମୟର ଛୋଟ ଛୋଟ ପିଲାଗୁଡ଼ିକୁ, ଗୋଟିଏ ପିଲା ଦେହରେ ଲମ୍ବାକୋଟ୍‌ଟିଏ ପିନ୍ଧିଥାଏ—ଅଉ ଗୋଟିଏ ମା' ଛାତିରେ ମୁହଁ ରଖି କାଖ ହୋଇଥାଏ । ଅଉ ତାର ମନେ ପଡ଼ିଲା ସେ କିପରି ସେତେବେଳେ ଗୋଟିଏ ଚିର ଆନନ୍ଦମୟ ଯୁବକ ଥିଲା । ମନେ ପଡ଼ିଲା, ସେ କିପରି ଯେଉଁ ହୋଟେଲ୍‌ରେ ଗିରଫ ହୋଇଥିଲା ସେଇ ହୋଟେଲର ଆଗପଟ ଅଳିନ୍ଦ ତଳେ ବସି ବୀଣା ବଜାଉଥିଲା । ସେତେବେଳେ ସେ କେଡ଼େ ନିଶ୍ଚିନ୍ତ ଥିଲା । ମନଶ୍ଚକ୍ଷୁରେ ସେ ଦେଖିପାରିଲା ଯେଉଁ

କାନରେ ତାର ଶୃଙ୍ଖଳ ମାରିଥିଲେ, ଯିଏ ମାରିଥିଲା, ଅନ୍ୟ ଯେଉଁ ଲୋକମାନେ ଚାରିଆଡ଼େ ଠିଆହୋଇ ଶୃଙ୍ଖଳମାରି ଦୃଶ୍ୟଟା ଦେଖୁଥିଲେ, ହାତ ଗୋଡ଼ରେ ବେଡ଼ି, ତାର ବନ୍ଦୀ ସଙ୍ଗୀଗୁଡ଼ିକ—ତାର ଛବିଶ ବର୍ଷର କାରା-ଜୀବନ, ତାର ଅକାଳ ବାର୍ଦ୍ଧକ୍ୟ, ଏସବୁ ଗୋଟି ଗୋଟି ହୋଇ ତାର ମନେ ପଡ଼ିବାକୁ ଲାଗିଲା । ଏସବୁ ଚିନ୍ତାରେ ତା ମନ ଏତେ ଭାଙ୍ଗିପଡ଼ିଲା ଯେ, ସେ ନିଜର ଜୀବନ ନିଃଶେଷ କରି ଦେବାକୁ ଭାବିଲା ।

ଭାବିଲା ଅକ୍‌ସିନଭ୍, "ଏସବୁ ସେହି ଦୁର୍ବୃତ୍ତର କାର୍ଯ୍ୟ !" ମାକାର୍ ସେମ୍ୟୋନିଚ୍ ଉପରେ ତାର ଏତେ ରାଗ ହେଲା ଯେ, ସେ ପ୍ରତିଶୋଧ ନେବାପାଇଁ ବ୍ୟାକୁଳ ହୋଇପଡ଼ିଲା । ପ୍ରତିଶୋଧ ନେବ ସେ, ଯଦିଓ ତଦ୍ଦ୍ୱାରା ତାର ନିଜର ଜୀବନ ବିପନ୍ନ ହୋଇଯିବ । ସାରାରାତି ସେ ପ୍ରାର୍ଥନା ସଙ୍ଗୀତ ଗାଇବାକୁ ଲାଗିଲା, କିନ୍ତୁ ଶାନ୍ତି ପାଇଲା ନାହିଁ । ଦିନବେଳା ସେ ମାକାର୍ ସେମ୍ୟୋନିଚ୍ ନିକଟକୁ ଗଲା ନାହିଁ କି ତା ମୁହଁ ଚାହିଁଲା ନାହିଁ ।

ପନ୍ଦର ଦିନ ଚାଲିଗଲା ।

ଅକ୍‌ସିନଭ୍‌ର ରାତିରେ ନିଦ ହୁଏନି—ଏତେ ବ୍ୟଥିତ ଲାଗେ ଯେ ସେ ଭାବିପାରେ ନା କଣ କରିବ ? ଦିନେ ରାତିରେ ସେ ତାର ବନ୍ଦୀଗୃହରେ ଏପଟ ସେପଟ ହେଉଥିଲା ବେଳେ ବନ୍ଦୀମାନଙ୍କ ଶୋଇବା ଅସ୍ଥାନ ଭିତରୁ ଗୋଟିଏ ଅସ୍ଥାନରୁ ମାଟି ଛିଡ଼ି ପଡ଼ିବାର ଦେଖିଲା । କଥାଟା କଣ ଦେଖିବାକୁ ସେ ରହିଗଲା । ହଠାତ୍ ମାକାର୍ ସେମ୍ୟୋନିଚ୍ ତା ଭିତରୁ ବାହାରି ଆସିଲା । ସମ୍ମୁଖରେ ଅକ୍‌ସିନଭ୍‌କୁ ଦେଖି ମୁହଁରେ ତାର ଭୀତିର ଛାୟା ଖେଳିଗଲା । ଅକ୍‌ସିନଭ୍ ତା ମୁହଁକୁ ନ ଚାହିଁ ଚାଲିଯିବାକୁ ଚେଷ୍ଟା କଲା, କିନ୍ତୁ ମାକାର୍ ତାର ହାତଧରି ପକାଇ କହିଲା, ସେ କାନ୍ଥ ତଳେ ଗୋଟେ

ଗାତ ଖୋଳନ୍ତି—ସେହି ମାଟିତକ ତାର ଭେଙ୍ଗା କୋଠା ଭିତରେ ଭର୍ତ୍ତି କରି ବନ୍ଦୀମାନଙ୍କ ସଙ୍ଗେ କାମ କରିବାକୁ ବାହାରିଲା ବେଳେ ସେତିକ ବାହାର ରାସ୍ତାରେ ପକାଇ ଦେଇ ଆସେ—

"ବୁଝିଲୁ ବୁଢ଼ା, ପାଟି ବୁଜ ରହ, ତୁ ବି ମୋ ସଙ୍ଗେ ଖସି ଯିବୁ। ଯଦି ପାଟି ଫିଟାଇ, ତେବେ ସେମାନେ ଗୁଳିର ମାଡ଼ରେ ମୋ ପ୍ରାଣ ବାହାର କରିଦେବେ। କିନ୍ତୁ ତା ଆଗରୁ ମୁଁ ତତେ ମାରି ଦେବି।"

ଅକ୍‌ସିନଭ୍ ତା ଶତ୍ରୁକୁ ଗୃହିଁ ରାଗରେ ଥରୁଥାଏ। ନିଜ ହାତ ଟାଣି ନେଇ ସେ କହିଲା, "ମୋର ପଳାଇ ଯିବାର ଇଚ୍ଛା ଆଦୌ ନାହିଁ—ତୁମର ବି ମତେ ବର୍ତ୍ତିମାନ ହତ୍ୟା କରିବାର କୌଣସି ଅବଶ୍ୟକତା ନାହିଁ; ତମେ ମତେ ବହୁତ ଆଗରୁ ମାରି ପକାଇଛ। ଆଜ ତୁମ କଥା କହି ଦେବା କଥା ଯାହା କହୁଛ, ଈଶ୍ୱରଙ୍କ ନିର୍ଦ୍ଦେଶାନୁଯାୟୀ ମୁଁ ତା କରିପାରେ—ଅଜ ନ କରି ପାରେ ମଧ୍ୟ—"

ତା ଅରଦିନ, ଯେତେବେଳେ ବନ୍ଦୀମାନଙ୍କୁ କାମପାଇଁ ବାହାରକୁ ନିଆଗଲା, ଜଗୁଆଳୀ ସୈନ୍ୟମାନେ ଦେଖିଲେ ଯେ, ଜଣେ ଜଣେ ବନ୍ଦୀ ସେମାନଙ୍କର କୋଠାରୁ ମାଟି କାଢ଼ି ପକାଇ-ଛନ୍ତି। ବନ୍ଦୀଶାଳାରେ ଖୋଜା ଖୋଜି କରି ଦେଖାଗଲା ଯେ, ଗୋଟିଏ ସୁଡ଼ଙ୍ଗ ହୋଇଛି। ବନ୍ଦୀଶାଳାର ଶାସକ ଆସି କିଏ ସୁଡ଼ଙ୍ଗ ଖୋଳିଛି ଜାଣିବାକୁ ସମସ୍ତଙ୍କୁ ଜେରା କଲେ। ଯେଉଁମାନେ ଜାଣିଥିଲେ, ସେମାନେ କାଳେ ମାକାର୍‌ସେମ୍ୟୋନର୍‌କୁ ଗୁଳିର ମାଡ଼ରେ ମାରି ଦିଆଯିବ ଏଇ ଭୟରେ ମୁହିଁ ଫିଟାଇଲେ ନାହିଁ। ଶାସକ ଅକ୍‌ସିନଭ୍‌କୁ ବଡ଼ ସଚ୍ଚୋଟ ଲୋକ ବୋଲି ଜାଣନ୍ତି— ଶେଷକୁ ତା ପାଖକୁ ଆସି କହିଲେ, "ବୁଢ଼ା ତୁ ତ ସବୁ ସତ କଥା

କହୁ, ଅଚ୍ଛା ଭଗବାନଙ୍କ ନାଁ ନେଇ କହୁଛ କିଏ ସେ ଗାଡଟା ଖୋଳୁଛ ?”

ମାକାର ସେମ୍ୟୋନିଚ୍ ଧୀରସ୍ଥିର ଭାବରେ କିଛି ନ ଜାଣିଲା ପରି ଠିଆ ହୋଇଥାଏ ଶାସକଙ୍କ ଆଡ଼କୁ ଚାହିଁ—ଅକ୍ସିନଭକୁ ଟିକିଏ ଅଡ଼େଇ କରି ମଧ୍ୟ ଚାହୁଁ ନ ଥାଏ । ଅକ୍ସିନଭ୍‌ର ହାତ ଓଠ ଥରିବାକୁ ଲାଗିଲା—ଅନେକ ସମୟ ପର୍ଯ୍ୟନ୍ତ ପଦେ କଥା ବି ସେ ଉଚ୍ଚାରଣ କରି ପାରିଲା ନାହିଁ । ସେ ଭାବିଲା, “ଯେ ମୋ ଜୀବନ ନଷ୍ଟ କରି ଦେଇଛି, ତାକୁ କାହିଁକି ରକ୍ଷା କରିବି ? ମୁଁ ଯାହା କଷ୍ଟ ପାଇଛି ସେଥିପାଇଁ ସେ ଶାସ୍ତି ଭୋଗୁ କିନ୍ତୁ ମୁଁ କହି ଦିଏ… ସେମାନେ ବୋଧହୁଏ ଚାବୁକ ମାରି ତା ପ୍ରାଣ ବାହାର କରିନେବେ —ହୁଏ ତ ମୁଁ ତାକୁ ଭୁଲରେ ସନ୍ଦେହ କରୁଛି—ଆଉ ତା ଛଡ଼ା ତାର କ୍ଷତି ହେଲେ ମୋର କଣ ବା ଉପକାର ହେବ ?”

ଶାସକ ପୁଣି ପଚାରିଲେ, “କହ ବୁଢ଼ା, କହ, ସତ କଥା କହି ପକା—କିଏ କାନ୍ଥ ତଳେ ଖୋଳାଖୋଳି କରୁଥିଲେ ?

ଅକ୍ସିନଭ୍ ମାକାରସେମ୍ୟୋନିଚ ଆଡ଼କୁ ଟିକେ କଣେଇ ଚାହିଁ କହିଲା—“ନା ହଜୁର, ମୁଁ କହି ପାରିବି ନାହିଁ— ଭଗବାନଙ୍କ ଇଚ୍ଛା ନୁହେଁ ଯେ ମୁଁ କହେଁ । ମୋତେ ଯାହା କରିବେ କରନ୍ତୁ । ମୁଁ ତ ଅପଣଙ୍କ ହାତରେ—”

ଶାସକ ଯେତେ ଚେଷ୍ଟାକଲେ ମଧ୍ୟ—ଅକ୍ସିନଭ୍ କହିଲା ନାହିଁ—କଥା ସେତିକିରେ ରହିଲା । ସେ ଦିନ ରାତିରେ ଯେତେ-ବେଳେ ଅକ୍ସିନଭ୍ ଖଟରେ ପଡ଼ି ଠିକ୍ ଯେତେବେଳେ ଘୁମେଇବାକୁ ଯାଉଛି, କିଏ ଜଣେ ଧୀର ପଦରେ ଆସି ତା ଖଟରେ ବସିଲା, ଅନ୍ଧକାରରେ ଅଇଭଳ ନିରେଖି ଚାହିଁ ଦେଖିଲା ସେ ମାକାର—

ଅକ୍‌ସିନଭ ପଚାରିଲା, "ଆଉ କଣ ମୋ ଠାରୁ ଚାହଁ ।—ତୁମେ କାହିଁକି ଆସିଛ ମୋ ପାଖକୁ ?" ମାକାର୍‌ସେମ୍ୟୋନିଚ୍‌ ନୀରବ ରହିଲା—ଅକ୍‌ସିନଭ୍‌ ବସିପଡ଼ି ପଚାରିଲା, "ପୁଣି କଣ ତୁମେ ଚାହଁ ? ଯାଅ, ବାହାରିଯାଅ ତା ନ ହେଲେ ଜଗୁଆଳକୁ ଡାକିବି—"

ମାକାର୍‌ସେମ୍ୟୋନିଚ୍‌ ଅକ୍‌ସିନଭ ଅଡ଼କୁ ନଇଁପଡ଼ି ଫୁସ୍‌ ଫୁସ୍‌ ହୋଇ କହିଲା, "ଆଇଭାନ୍‌ ଡମେଟ୍ରିଚ୍‌, ମତେ କ୍ଷମା କର ।"

"କେଉଁଥି ପାଇଁ ?" ପଚାରିଲା ଅକ୍‌ସିନଭ୍‌ ।

"ମୁଁ ସେଇ ବଣିକକୁ ମାରିଥିଲି ଆଉ ତୁମ ବୁଜୁଳା ଭିତରେ ଛୁରୀଟା ପୂରାଇ ଦେଇଥିଲି । ତମକୁ ମାରିବି ବୋଲି ଭାବିଥିଲି କିନ୍ତୁ ବାହାରେ ଗୋଟେ ଶବ୍ଦ ଶୁଣିଲି, ତେଣୁ ତୁମ ମୁଣିରେ ଛୁରୀଟା ଲୁଚାଇ ଦେଇ ମୁଁ ଝରକା ବାଟେ ପଳାଇଗଲି ।"

ଅକ୍‌ସିନଭ୍‌ ଚୁପ୍‌ ହୋଇ ରହିଲା, କଣ କହିବ ଭାବି ପାରିଲା ନାହିଁ । ମାକାର ସେମ୍ୟୋନିଚ୍‌ ଶେଯ ଉପରୁ ଖସି ଯାଇ ଭୂଇଁରେ ଆଣ୍ଠୁ ମାଡ଼ି ବସି କହିଲା, "ଆଇଭାନ୍‌ ଡମେଟ୍ରିଚ୍‌, ମତେ କ୍ଷମା କର । ଭଗବାନଙ୍କ ଦ୍ୱାହି—ମତେ କ୍ଷମା କର । ମୁଁ ମାନିଯିବି ସେଇ ବଣିକକୁ ମାରିଥିଲି ବୋଲି ଆଉ ତୁମେ ଖଲାସ ହୋଇ ଘରକୁ ଯାଇ ପାରିବ ।"

ଅକ୍‌ସିନଭ୍‌ କହିଲା, "କହି ଦେବାଟା ତୁମକୁ ସୁବିଧା, କିନ୍ତୁ ମୁଁ ଏବେଲେ ଆଉ କୁଆଡ଼େ ଯାଇ ପାରିବି ?...ମୋ ସ୍ତ୍ରୀ ମରି-ଯାଇଛି—ମୋ ପିଲେ ମତେ ଭୁଲିଗଲେଣି । ମୋର ଆଉ କର୍ତ୍ତବ୍ୟର କେଉଁଠାରେ ସ୍ଥାନ ନାହିଁ..."

ମାକାର୍‌ ସେମ୍ୟୋନିଚ୍‌ ଉଠିଲା ନାହିଁ । ଚଟାଣରେ ତା ମୁଣ୍ଡ ପିଟିବାକୁ ଲାଗିଲା, କାନ୍ଦି କାନ୍ଦି କହିବାକୁ ଲାଗିଲା,

"ଅଇଭାନ୍ ଡମେଟ୍ରିକ୍, ମତେ କ୍ଷମାକର । ମତେ ଗୁରୁଙ୍କ ମାରିଲା ବେଳେ ଯେତେ କଷ୍ଟ ଲାଗି ନ ଥିଲା ବର୍ତ୍ତମାନ ତୁମକୁ ଦେଖି ତା'ଠୁ ବେଶୀ କଷ୍ଟ ଲାଗୁଛି···ତଥାପି ତମେ ମତେ ଦୟା କଲ; ଶାସକଙ୍କ ଆଗରେ କିଛି କହିଲ ନାହିଁ । ଈଶ୍ୱରଙ୍କ ଦୋହାଇ, ହତଭାଗା ମୁଁ, ମତେ କ୍ଷମା କର !" କାନ୍ଦିବାକୁ ଆରମ୍ଭ କଲା ସେ ।

ଅକ୍ସିନଭ୍ ତାର କାନ୍ଦ ଶୁଣିଲା କ୍ଷଣି, ତା ଆଖିରୁ ମଧ୍ୟ ଲୁହ ବୋହିଲା, କହିଲା ସେ, "ଈଶ୍ୱର ତୁମକୁ କ୍ଷମା କରିବେ । ହୁଏତ ମୁଁ ତମଠାରୁ ଶତଗୁଣରେ ହୀନ ।" ଏଇ କେତୋଟି ପଦ କଥାରେ ତା ହୃଦୟର ଭାବ ଜଣା ହୋଇଗଲା । ଘରକୁ ଯିବାର ବ୍ୟାକୁଳତା କଟିଗଲା । ବନ୍ଦୀଶାଳା ଛାଡ଼ିଦେଇ ଯିବାକୁ ତାର ଆଉ ଇଚ୍ଛା ହେଲା ନାହିଁ । ଜୀବନର ଶେଷ ମୁହୂର୍ତ୍ତକୁ ସେ ଅପେକ୍ଷା କରି ରହିଲା ।

ଅକ୍ସିନଭ୍ ଯାହା କହିଲେ ବି, ମାକାର୍ସେମ୍ୟୋନିଚ୍ ତାର ଦୋଷ ସ୍ୱୀକାର କଲା । କିନ୍ତୁ ତାର ମୁକ୍ତିର ସମ୍ବାଦ ପହଞ୍ଚିଲା ବେଳକୁ ଅକ୍ସିନଭ୍‌ର ଜୀବନ ଶେଷ ହୋଇଯାଇଥିଲା ।



## ଗର୍ବର ପରିଣତି

ପୂର୍ବକାଳରେ ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିବା ସମୟରେ ବୋଧିସତ୍ତ୍ୱ ସେଠାରେ କୌଣସି ପ୍ରସିଦ୍ଧ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ଶୈଶବାବସ୍ଥା ଅତିବାହିତ ହୁଅନ୍ତେ ସେ ତକ୍ଷଶୀଳା ଯାଇ ଗୁରୁଗୃହରେ ଶାସ୍ତ୍ର ଓ ଶସ୍ତ୍ରବିଦ୍ୟା ଅଧ୍ୟୟନ କଲେ । ଅଳ୍ପ ସମୟ ମଧ୍ୟରେ ସେ ସମସ୍ତ ବିଦ୍ୟାରେ ଧୁରନ୍ଧର ହୋଇ ଉଠିଲେ; ବିଶେଷତଃ ଶାସ୍ତ୍ରବିଦ୍ୟାରେ ତାଙ୍କର ସମକକ୍ଷ ସମଗ୍ର ଜମ୍ବୁଦ୍ୱୀପରେ ଆଉ କେହି ନ ଥିଲେ ।

ଜନ୍ମ ସମୟରୁ ସେ ବାମନ ସଦୃଶ ଥିଲେ । ତଥାପି ସାହସ, ବୀରତ୍ୱ ଓ ଧନୁର୍ବିଦ୍ୟାରେ ବିଶେଷ ଦକ୍ଷତା ଲାଭ କଲେ । ତାଙ୍କର କୃତିତ୍ୱରେ ମୁଗ୍ଧ ହୋଇ ଗୁରୁ ତାଙ୍କର ନାମ ଦେଲେ 'ଚୂଲ୍ଲଧନୁର୍ଗ୍ରାହୀ' । *

ଚୂଲ୍ଲଧନୁର୍ଗ୍ରାହୀ ଗୁରୁ ଆଶ୍ରମରୁ ବିଦ୍ୟାଶିକ୍ଷା ଅନ୍ତେ ବିଦାୟ ନେଇ ଆସିଲେ । ଗୃହରେ ପହଞ୍ଚି ଦେଖିଲେ ଯେ, ତାଙ୍କ ପିତାମାତା ଆଉ ଇହଲୋକରେ ନାହାନ୍ତି । ସଂସାରରେ ତାଙ୍କର ଆଉ କୌଣସି

---

* ଚୂଲ୍ଲ—କ୍ଷୁଦ୍ର ।

ପ୍ରକାର ବନ୍ଧନ ନ ଥିଲା । ତେଣୁ ସେ ଜନ୍ମସ୍ଥାନ ଓ ରାଜ୍ୟ ଛାଡ଼ି ଦୂରଦେଶ ଭ୍ରମଣରେ ବାହାରିଲେ ।

ସେତେବେଳେ ସେ ମନରେ ଭାବିଲେ, "କୌଣସି ରାଜଦରବାରରେ କାର୍ଯ୍ୟ କରି ଜୀବିକା ନିର୍ବାହ କରିବି । ମାତ୍ର ମୋର ଆକୃତି ଦେଖି କେହିହେଲେ ମୋ ଗୁଣର ଆଦର କରିବେ ନାହିଁ । ସମସ୍ତେ ଭାବିବେ, ଏହି କ୍ଷୁଦ୍ରକାୟ ବ୍ୟକ୍ତି କଦାପି ବୀର ଧନୁର୍ଦ୍ଧାରୀ ହୋଇ ନ ପାରେ । ତେଣୁ ମୁଁ ପ୍ରାର୍ଥୀ ହେବା ସଙ୍ଗେ ସଙ୍ଗେ ମୋତେ ତୁଚ୍ଛ ତାଚ୍ଛଲ୍ୟ କରି ଦରବାରରୁ ବିଦାୟ କରିଦେବେ ।"

ଏହା ଭାବି ସେ ଦେଶରୁ ଦେଶାନ୍ତର ବୁଲିବୁଲି ଜଣେ ଦୀର୍ଘକାୟ ପୁରୁଷଙ୍କୁ ଦେଖିଲେ । ସେ କୌଣସିମତେ ଜୀବିକା ନିର୍ବାହ କରିପାରୁ ନ ଥିବାରୁ ବସ୍ତ୍ରବସ୍ତୁନ କରି ଅତି ଦୁଃଖ କଷ୍ଟରେ ଚଳୁଥିଲେ । ଚୁଲ୍ଲଧନୁର୍ଦ୍ଧାରୀ ତାଙ୍କ ନିକଟକୁ ଯାଇ ପଚାରିଲେ, "ତୁମ୍ଭର ନାମ କଅଣ ?"

ସେହି ଦୀର୍ଘକାୟ ପୁରୁଷ ଉତ୍ତର ଦେଲେ, "ମୋ ନାମ ଭୀମସେନ ।"

ନାମ ଆକୃତିର ଯଥାଯୋଗ୍ୟ ହୋଇଥିବାର ଶୁଣି ସେ ଆନନ୍ଦିତ ହେଲେ ଏବଂ ପୁଣି ପ୍ରଶ୍ନକଲେ, "ତୁମେ ସୌମ୍ୟ, ଦୀର୍ଘକାୟ ଓ ବଳିଷ୍ଠ । ତଥାପି ଏହି ହୀନ କାର୍ଯ୍ୟ କରି ଅତି ଅଳ୍ପମାତ୍ର ଆୟରେ ସନ୍ତୁଷ୍ଟ ରହୁଅଛ କିପରି ?"

ଭୀମସେନ ଉତ୍ତର ଦେଲେ, "ମୋର ଖାଦ୍ୟଦ୍ରବ୍ୟ ସଂଗ୍ରହ କରିବା ଲାଗି ମୁଁ ଅନ୍ୟ କୌଣସି ଉପାୟ ପାଇଲି ନାହିଁ । ବେଶି ଆୟ କରିବା ଭଳି ମୋର କୌଣସି ଜ୍ଞାନ ମଧ୍ୟ ନାହିଁ । ନାମ ଭୀମସେନ ହୋଇଥିଲେ ମଧ୍ୟ ମୁଁ ଯେ କୌଣସି ଶତ୍ରୁକୁ ଦେଖିଲେ

ଭୟ କରେ । ତେଣୁ ବହୁ ସ୍ଥାନ ବୁଲି ଓ ବହୁତ କାର୍ଯ୍ୟରେ ଯୋଗ ଦେଇ ଅକୃତକାର୍ଯ୍ୟ ହେଲା ପରେ ଏହି ପନ୍ଥା ଗ୍ରହଣ କରିଅଛୁ ।"

ଚୂଲ୍ଲଧନୁର୍ଦ୍ଧାରୀ କହିଲେ, "ତୁମେ ଏବେ ମୋ ସହିତ ଆସ, ମୋର ଆକୃତି କ୍ଷୁଦ୍ର ହେଲେ ମଧ୍ୟ ମୁଁ ବଡ଼ ଯୋଦ୍ଧା, ସମଗ୍ର ଜମ୍ବୁଦ୍ୱୀପରେ ଧନୁଶର ପରିଚାଳନା କରିବାରେ ମୋର ସମକକ୍ଷ ଆଉ କେହି ନାହାନ୍ତି । ତୁମେ ମୋ ସହିତ ରହିଲେ ଏବଂ ମୋର ନିର୍ଦ୍ଦେଶ ମୁତାବକ କାର୍ଯ୍ୟକଲେ, ନିଶ୍ଚୟ ରାଜଦରବାରରେ ସମ୍ମାନିତ ହେବ ଏବଂ ବହୁ ଅର୍ଥ ଉପାର୍ଜ୍ଜନ କରିପାରିବ ।

ଚୂଲ୍ଲଧନୁର୍ଦ୍ଧାରୀଙ୍କଠାରୁ ଏପରି ବଚନ ଶୁଣି ସେ ବସ୍ତ୍ରବୟନ କାର୍ଯ୍ୟ ତ୍ୟାଗକରି ତାଙ୍କ ସହ ଯୋଗଦେଲେ । ଉଭୟେ ବିଭିନ୍ନ ରାଜ୍ୟ ବୁଲି ଶେଷରେ ଆସି ନର୍ମଦା ଦକ୍ଷିଣ ତଟ ମହିଷକ ରାଷ୍ଟ୍ରରେ ପ୍ରବେଶ କଲେ ।

ଚୂଲ୍ଲଧନୁର୍ଦ୍ଧାରୀ ଭୀମସେନଙ୍କୁ କହିଲେ, "ତୁମେ ଯାଇ ରାଜାଙ୍କୁ ସାକ୍ଷାତ୍ କର ଏବଂ ପ୍ରଧାନ ସେନାପତି କାର୍ଯ୍ୟ ପାଇଁ ପ୍ରାର୍ଥୀ ହୁଅ । ରାଜା ପଚାରିଲେ ନିର୍ଭୟରେ ଉତ୍ତରଦେବ ଯେ, ମୋ ପରି ବୀର ଓ ମୋ ପରି ଧନୁର୍ବିଦ୍ୟାକୁଶଳୀ ସମଗ୍ର ଜମ୍ବୁଦ୍ୱୀପରେ ଆଉ କେହି ନାହାନ୍ତି । ରାଜା ତୁମଙ୍କୁ ଉଚ୍ଚପଦରେ ନିଯୁକ୍ତ କରି ଯେ ବେତନ ପ୍ରଦାନ କରିବେ, ସେଥିରେ ଆମେ ଦୁହେଁ ସୁନ୍ଦରରୂପେ ଚଳି ପାରିବା । ଯଦି ରାଜା କୌଣସି ପ୍ରକାର ପରୀକ୍ଷା କରିବାକୁ ଚାହାନ୍ତି ତେବେ ସେତେବେଳେ ମୁଁ ସବୁମନ୍ତେ ତୁମଙ୍କୁ ସାହାଯ୍ୟ କରିବି ଏବଂ ତୁମ ପାଇଁ ସମସ୍ତ କାମ କରିଦେବି ।"

ଚୂଲ୍ଲଧନୁର୍ଦ୍ଧାରୀଙ୍କଠାରୁ ଉତ୍ସାହ ଓ ପ୍ରେରଣା ପାଇ ଭୀମସେନ ମହିଷକ ରାଷ୍ଟ୍ରର ରାଜାଙ୍କ ନିକଟକୁ ବାର୍ତ୍ତା ପଠାଇଲେ । ରାଜା ଦର୍ଶନ ପାଇଁ ଦରବାରକୁ ତାଙ୍କୁ ଡକାଇବାରୁ ସେ ଭୟରେ ଥରିବାକୁ

ଲାଗିଲେ । ଚୂଲ୍ଲଧନୁର୍ଦ୍ଧାରୀ ତାଙ୍କ ସଙ୍ଗେ ସଙ୍ଗେ ରହି ପ୍ରତ୍ୟେକ କଥାରେ ତାଙ୍କୁ ପରାମର୍ଶ ଦେଲେ ।

ରାଜଦରବାରରେ ଆଗ ପଛ ହୋଇ ଭୀମସେନ ଓ ଚୂଲ୍ଲ-ଧନୁର୍ଦ୍ଧାରୀ ଯାଇ ପହଞ୍ଚିଲେ । ରାଜା ଭୀମସେନଙ୍କୁ ଗୁହିଁ ପଗୁରିଲେ, "ତୁମେ ଏଠାକୁ ଆସିବାର ଉଦ୍ଦେଶ୍ୟ କଅଣ ?"

ଚୂଲ୍ଲଧନୁର୍ଦ୍ଧାରୀଙ୍କ ପରାମର୍ଶ କ୍ରମେ ଭୀମସେନ ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲେ, "ମହାରାଜ ! ମୋ ପରି ଧନୁର୍ବିଦ୍ୟା-ବିଶାରଦ ସମଗ୍ର ଜମ୍ବୁଦ୍ୱୀପରେ ଆଉ ଦ୍ୱିତୀୟ ନାହାନ୍ତି । ମୁଁ ଆପଣଙ୍କ ନିକଟକୁ ଚାକରିପ୍ରାର୍ଥୀ ହୋଇ ଆସିଅଛି । ମୋତେ ଆପଣଙ୍କ ସମର-ଉପସ୍ଥାପକ ନିଯୁକ୍ତ କଲେ ମୁଁ ମୋର ବୀରତ୍ୱରେ ଆପଣଙ୍କୁ ଶତ୍ରୁଶୂନ୍ୟ କରିଦେବି ।"

ରାଜା ପୁଣି ପ୍ରଶ୍ନକଲେ, "କେତେ ବେତନ ପାଇଲେ ତୁମେ ସନ୍ତୁଷ୍ଟ ହେବ ?"

ଭୀମସେନ ଉତ୍ତର ଦେଲେ, "ଅର୍ଦ୍ଧମାସରେ ଏକ ସହସ୍ର ମୁଦ୍ରା ମିଳିଲେ ମୁଁ ଆପଣଙ୍କ ନିକଟରେ ଚିରଦିନ ପାଇଁ କାର୍ଯ୍ୟକରିବି।"

ରାଜା ମନେମନେ ଭାବିଲେ, "ଏ ଯେପରି ବଳିଷ୍ଠ ଓ ଦୀର୍ଘକାୟ, ନାମ ମଧ୍ୟ ସେହିପରି ବୀରତ୍ୱବ୍ୟଞ୍ଜକ । ଏହାଙ୍କୁ ନିକଟରେ ରଖିଲେ ମୁଁ ସବୁ ପ୍ରକାର ଆପଦ ବିପଦରୁ ଏବଂ ଶତ୍ରୁ ହାତରୁ ନିଶ୍ଚୟ ରକ୍ଷା ପାଇବି ।"

ପ୍ରକାଶ୍ୟରେ କହିଲେ, "ଭୀମସେନ ! ତୁମ ସହିତ ଥିବା ଅନ୍ୟ ଜଣକ କିଏ ? ଏବଂ କି ଉଦ୍ଦେଶ୍ୟରେ ସେ ଆସିଅଛନ୍ତି ?"

ଭୀମସେନ ଉତ୍ତର ଦେଲେ, "ସେ ମୋର ଭୃତ୍ୟ, ଆକୃତି କ୍ଷୁଦ୍ର ହେଲେହେଁ ସେ ଜମ୍ବୁଦ୍ୱୀପରେ ଅନ୍ୟତମ ଶ୍ରେଷ୍ଠ ଯୋଦ୍ଧା

ଓ ଧନୁର୍ଦ୍ଧାରୀ । ମୁଁ ଯେଉଁଠାରେ ଅବସ୍ଥାନ କରିବି, ସେ ମଧ୍ୟ ସେହିଠାରେ ମୋ ସଙ୍ଗେ ସଙ୍ଗେ ରହିବ ।”

ରାଜା ଭୀମସେନଙ୍କଠାରୁ ଉପଯୁକ୍ତ ଉତ୍ତର ପାଇ ତାଙ୍କୁ ସମର-ଉପସ୍ଥାପକ ପଦରେ ନିଯୁକ୍ତ କଲେ ଏବଂ ଅର୍ଦ୍ଧମାସକୁ ଏକ ସହସ୍ର ମୁଦ୍ରା ପ୍ରଦାନ କରିବେ ବୋଲି ଆଶ୍ୱାସନା ଦେଲେ ।

ବାମନ ଓ ଭୀମସେନ ସେଠାରେ ଏକତ୍ର ବାସ କରି ରହିଲେ । ଭୀମସେନ ନାମକୁ ମାତ୍ର କର୍ମରେ ନିଯୁକ୍ତ ହେଲେ ସତ, ମାତ୍ର ଯାହା କିଛି କାର୍ଯ୍ୟ କରିବାକୁ ହୁଏ, ତାହା ତୁଚ୍ଛ-ଧନୁର୍ଦ୍ଧାରୀ ହିଁ କରିଥାନ୍ତି । ତାଙ୍କ ବୁଦ୍ଧିବିବେକ, ବୀରତ୍ୱ ଓ କାର୍ଯ୍ୟ-କୁଶଳତା ଯୋଗେ ଭୀମସେନ ସମସ୍ତ କାର୍ଯ୍ୟରେ ସଫଳତା ଲାଭ କରନ୍ତି ଏବଂ ରାଜ୍ୟ ଓ ରାଜଦରବାରର ସମସ୍ତଙ୍କଠାରୁ ପ୍ରଶଂସା ପାଆନ୍ତି । ରାଜା ବେତନ ସ୍ୱରୂପ ଯେ ଅର୍ଥ ଦିଅନ୍ତି, ସେଥିରେ ଭୀମସେନ ଓ ତୁଚ୍ଛଧନୁର୍ଦ୍ଧାରୀ ଉଭୟେ ଚଳନ୍ତି ।

ଥରେ ରାଜ୍ୟ ମଧ୍ୟସ୍ଥ କୌଣସି ଅରଣ୍ୟପଥରେ ଗୋଟିଏ ମହାବଳ ବାଘର ଉପଦ୍ରବ ବଢ଼ିଗଲା । ସେ ପଥ ଦେଇ ଯେ ଯିବା ଆସିବା କଲା, ବାଘ ତାକୁ ମାରି ଖାଇଲା । ଏପରି କି ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କ ମଧ୍ୟକୁ ଆସି ସେ ମନୁଷ୍ୟ ଓ ଗୃହପାଳିତ ପଶୁ ନଷ୍ଟ କରିବାକୁ ଲାଗିଲା । ଲୋକମାନେ ବହୁ ପ୍ରକାର ଉଦ୍ୟମ କଲେ; ଅଥଚ ବାଘକୁ ମାରି ପାରିଲେ ନାହିଁ । ବାଘ ଭୟରେ ରାଜ୍ୟବାସୀ ବଡ଼ ଅସ୍ଥିର ହୋଇ ଉଠିଲେ । ଅନ୍ୟ ଉପାୟ ନ ଦେଖି ଲୋକମାନେ ଶେଷକୁ ରାଜାଙ୍କ ନିକଟରେ ଗୁହାରି କଲେ । ରାଜା ସମସ୍ତ କଥା ଶୁଣି ଭୀମସେନଙ୍କୁ ରାଜଦରବାରକୁ ଡକାଇ ପଠାଇଲେ ।

ଯେଉଁ ଦୂତ ଡାକିବାକୁ ଯାଇଥିଲା, ତାହାଠାରୁ ବାଘର ବୃତ୍ତାନ୍ତ ଶୁଣି ଭୀମସେନ ଭୟରେ ଥରିବାକୁ ଲାଗିଲେ । ସେ ମନରେ

ଭାବିଲେ, "ଯେଉଁ ବାଘ ଶତଶତ ମନୁଷ୍ୟ ହତ୍ୟାକଲାଣି, ମୁଁ ତାହାର ଗୋଟିଏ ଦିନର ଆହାର ହେବି ସିନା । ବରଂ ଏ ସ୍ଥାନ ଛାଡ଼ି ପଳାଇଯିବା ମୋ ପକ୍ଷରେ ଉଚିତ ।"

ଚୂଲ୍ଲଧନୁର୍ଦ୍ଧାରୀ ଭୀମସେନଙ୍କ ଅସହାୟ ଅବସ୍ଥା ଓ ଚିନ୍ତା-ଛନ୍ନ ମୁଖର ଭଙ୍ଗୀ ଦେଖି ଆଶ୍ୱାସନା ଦେଲେ । ସେ କହିଲେ, "ତୁମର ଏପରି ଭାଙ୍ଗି ପଡ଼ିବାର କୌଣସି କାରଣ ନାହିଁ । ତୁମେ ରାଜଦରବାରକୁ ଯାଅ ଏବଂ ରାଜା ଯାହା ପ୍ରଶ୍ନ କରିବେ ତାହାର ଯଥାର୍ଥ ଉତ୍ତର ଦିଅ । ରାଜାଙ୍କ ନିକଟରେ ନିଜର ଭୀରୁତା ପ୍ରକାଶ କରିବ ନାହିଁ ।"

ବାରମ୍ବାର ଉତ୍ସାହ ପ୍ରଦାନ କରି ଚୂଲ୍ଲଧନୁର୍ଦ୍ଧାରୀ ଭୀମସେନଙ୍କୁ ରାଜଦରବାରକୁ ପଠାଇଦେଲେ । ରାଜା ଭୀମସେନଙ୍କୁ ଦେଖି ପ୍ରଶ୍ନକଲେ, "ଭୀମସେନ ! ରାଜ୍ୟରେ ବାଘର ଉପଦ୍ରବ ଅତି ବେଶି ବଢ଼ିଗଲାଣି । ପ୍ରଜାମାନେ ଭୀତତ୍ରସ୍ତ ହୋଇ ରହିଅଛନ୍ତି; ତୁମେ ସେ ବାଘଟିକୁ ମାରିଦେଇ ପାରିବ କି ?"

ମନ ମଧ୍ୟରେ ବିପରୀତ ଭାବ ଥିଲେ ମଧ୍ୟ ଭୀମସେନ ପ୍ରକାଶ୍ୟରେ ବହୁ ସାହସ ଦେଖାଇ ଦମ୍ଭର ସହିତ କହିଲେ, "ମହାରାଜ ! ସ୍ଥିର ବାଘଟାକୁ ଯଦି ମାରିଦେଇ ନ ପାରିବି, ତେବେ ମୋର ନାମ ଭୀମସେନ କାହିଁକି ହୋଇଛି ? ବୀରତ୍ୱ ଓ ସାହସ ଯୋଗେ ମୁଁ ସମଗ୍ର ଜମ୍ବୁଦ୍ୱୀପରେ ଖ୍ୟାତି ପାଇଅଛି । ମୁଁ ବାଘଟିକୁ ମାରି ନ ପାରିଲେ, ଆଉ ମାରିବ କିଏ ?"

ରାଜା ଖୁସି ହୋଇ ତାଙ୍କୁ ଆଦେଶ ଦେଲେ, "ତୁମେ ଅତିଶୀଘ୍ର ସେ ଉପଦ୍ରୁତ ଅଞ୍ଚଳକୁ ଯାଅ ଏବଂ ବାଘଟିକୁ ମାରି ଆଣ ।"

ରାଜାଙ୍କ ଆଦେଶ ପାଇ ଭୀମସେନ ବାସଗୃହକୁ ଫେରିଲେ । ଚୂଲ୍ଲଧନୁର୍ଦ୍ଧାରୀଙ୍କୁ ସବୁ କହିଲେ, "ବର୍ତ୍ତମାନ ବ୍ୟାଘ୍ରର ଆହାର

ହେବା ବ୍ୟତୀତ ମୋ ଭାଗ୍ୟରେ ଅଜ୍ଞ କିଛୁ ନାହିଁ । ତୁମ କଥା ଅନୁସାରେ ମୁଁ ବାଘ ମାରିଦେବି ବୋଲି ରାଜାଙ୍କ ସମ୍ମୁଖରେ ପ୍ରତିଜ୍ଞା କରି ଅସିଲି, ଏବେ କରିବି କଅଣ ?”

ଚନ୍ଦ୍ରଧନୁର୍ଦ୍ଧାରୀ ଭୀମସେନଙ୍କୁ ଏକାନ୍ତରେ ବସାଇ କେତେକ ପରାମର୍ଶ ଦେଲେ । ତାଙ୍କ ପରାମର୍ଶ ପରେ ଭୀମସେନଙ୍କ ଭୀରୁତା ଦୂର ହେଲା । ସେ ବୀରବେଶରେ ଧନୁଶର ଧରି ଅରଣ୍ୟ ପଥକୁ ବାହାରିଲେ

ସେ ଘୋଷଣା କଲେ ଯେ, ବାଘ ସହ ଯୁଦ୍ଧ କରିବାବେଳେ ମୋ ନିକଟରେ ଏକ ସହସ୍ର ଗ୍ରାମବାସୀ ଧନୁଶର ଓ ଠେଙ୍ଗା ବାଡ଼ି ଧରି ଉପସ୍ଥିତ ରହିବା ଦରକାର । ତାଙ୍କ କଥା ଅନୁସାରେ ଗ୍ରାମବାସୀ ବହୁସଂଖ୍ୟାରେ ନିଜ ନିଜର ଅସ୍ତ୍ରଶସ୍ତ୍ର ଧରି ତାଙ୍କ ସହିତ ଯୋଗଦେଲେ । ଭୀମସେନ ବହୁ ପ୍ରକାର ତର୍ଜନଗର୍ଜନ କରି ଓ ଲୋକଙ୍କ ଆଗରେ ବୀରତ୍ୱ ଦେଖାଇ ଅରଣ୍ୟପଥକୁ ଯାତ୍ରା କଲେ । ତାଙ୍କ ଚତୁପାର୍ଶ୍ୱରେ ଘେରି ଲୋକମାନେ ଚାଲିଥାଆନ୍ତି ।

କ୍ରମେ ଅରଣ୍ୟ ମଧ୍ୟସ୍ଥ ବ୍ୟାଘ୍ରର ବାସସ୍ଥାନରେ ଯାଇ ସେମାନେ ପହଞ୍ଚିଲେ । ଜନକୋଳାହଳ ଓ ବାଦ୍ୟନାଦ ଶୁଣି ବ୍ୟାଘ୍ର କ୍ରୋଧରେ କମ୍ପିଉଠିଲା । ସେ ନିଜର ଶୟନ ସ୍ଥାନରୁ ଉଠି ଲୋକମାନଙ୍କ ସମ୍ମୁଖକୁ ଧାଇଁଅସିଲା । ମନୁଷ୍ୟ ଶିକାର କରିକରି, ତାହାର ସାହସ ବହୁତ ବଢ଼ିଯାଇଥିଲା । ସେ ଭାବି ନ ଥିଲା ଯେ, ଅଜି ଏତେ ସଂଖ୍ୟକ ମନୁଷ୍ୟ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଅସିଅଛନ୍ତି ।

ବ୍ୟାଘ୍ରକୁ ଦେଖିବା ମାତ୍ରକେ ଭୀମସେନ କୌଶଳକ୍ରମେ ସେଠାରୁ ଖସି ପଳାଇଗଲେ ଏବଂ ଗୋଟିଏ ପର୍ବତ ଗୁମ୍ଫା ମଧ୍ୟରେ ଗୋପନରେ ବସିରହିଲେ । ଭୀମସେନଙ୍କୁ ନ ଦେଖି ଲୋକମାନଙ୍କ ମନରେ ଭୟ ଜାତ ହେଲା; ମାତ୍ର ସମ୍ମୁଖରେ ସାକ୍ଷାତ୍ ଯମ । ବର୍ତ୍ତମାନ ମୁହୂର୍ତ୍ତେ ଅବହେଳା କଲେ ମୃତ୍ୟୁ ସୁନିଶ୍ଚିତ । ସେହି ମରଣଭୟ

ସେମାନଙ୍କୁ ସାହସ ଓ ଉତ୍ସାହ ଦେଲା । ସେମାନେ ହସ୍ତରେ ଧରିଥିବା ଠେଙ୍ଗାବାଡ଼ିରେ ପିଟି ବାଘକୁ ମାରିପକାଇଲେ । ସେହି ବ୍ୟାଘ୍ର-ମନୁଷ୍ୟ ଯୁଦ୍ଧରେ କେତେକ ମନୁଷ୍ୟ ମଲେ ଏବଂ କେତେକ ଗୁରୁତର ଭାବରେ ଆହତ ମଧ୍ୟ ହେଲେ ।

ବ୍ୟାଘ୍ରର ମୃତ୍ୟୁ ହେଲା ପରେ ଭୀମସେନ ଗ୍ରାମମଧ୍ୟରୁ ବାହାରି ପଦାକୁ ଆସିଲେ । ସେ ଅରଣ୍ୟମଧ୍ୟରୁ କେତେକ ଲତା ଛିଣ୍ଡାଇ ଆଣି ତାହା ହାତରେ ଧରି ଆସି ଲୋକମାନଙ୍କ ପାଖରେ ପହଞ୍ଚିଲେ । ତଳେ ପଡ଼ିଥିବା ମୃତ ବ୍ୟାଘ୍ରକୁ ବୀରଦର୍ପଭଙ୍ଗୀରେ ଥରେ ଦୁଇଥର ଗୃହିଁ ମିଛ କ୍ରୋଧରେ କମ୍ପିଉଠିଲେ । ଲୋକ-ମାନଙ୍କୁ ସେ ଗର୍ଜନ କରି କହିଲେ, "ତୁମେ ଏ ବ୍ୟାଘ୍ରକୁ ଜୀବନରେ ମାରିଦେଲ କାହିଁକି ? ରାଜାଙ୍କର ନିର୍ଦ୍ଦେଶ ଥିଲା, ଏହାକୁ ଜୀବନ୍ତ ଧରିନେଇ ତାଙ୍କ ପାଖରେ ପହଞ୍ଚାଇଦେବା । ସେହି ହେତୁରୁ ବ୍ୟାଘ୍ରକୁ ଦେଖି ମୁଁ ଅରଣ୍ୟ ମଧ୍ୟକୁ ଲତାଗୁଳ୍ମ ସଂଗ୍ରହ ଉଦ୍ଦେଶ୍ୟରେ ଯାଇଥିଲି । ଦେଖ, ତାହା ସଂଗ୍ରହ କରି ଆଣିଅଛି । ଏଥିରେ ବ୍ୟାଘ୍ରକୁ ବାନ୍ଧି ଗୃହପାଳିତ ପଶୁପରି ରାଜ-ଦରବାରକୁ ନେଇ ଯାଇଥାନ୍ତି । ମାତ୍ର ମୋର ଏହି ମୂହୂର୍ତ୍ତେ ମାତ୍ର ଅନୁପସ୍ଥିତିରେ ତୁମେ ତାକୁ ଜୀବନରେ ମାରି ପକାଇଲ । ଏହା ଶୁଣିଲେ ରାଜା ଭୟଙ୍କର କୁପିତ ହେବେ । ସେତେବେଳେ ତୁମର ଉପାୟ କଅଣ ?

ଗ୍ରାମବାସୀ ଭୀମସେନଙ୍କଠାରୁ ଏଭଳି କଥା ଶୁଣି ଭୀତତ୍ରସ୍ତ ହୋଇଉଠିଲେ । ବ୍ୟାଘ୍ରଭୟଠାରୁ ରାଜଭୟ ସେମାନଙ୍କୁ ଅଧିକ ଘାରିଲା । ସେମାନେ ଭୀମସେନଙ୍କୁ ବହୁ ଅର୍ଥ ଦାନ କରି ସନ୍ତୁଷ୍ଟ କରାଇଲେ ଏବଂ ସେମାନେ ବ୍ୟାଘ୍ରକୁ ହତ୍ୟା କରିଥିବା କଥା ରାଜାଙ୍କ ଆଗରେ ନ କହିବା ଲାଗି ନିବେଦନ କଲେ । ଭୀମସେନ

ସେ ଧନରତ୍ନ ଧରି ମୃତବ୍ୟାଘ୍ର ସହ ରାଜଧାନୀକୁ ଫେରିଆସିଲେ । ଗ୍ରାମବାସୀ କେହି ଭୟରେ ରାଜଧାନୀକୁ ନ ଆସି ନିଜ ନିଜ ଗ୍ରାମରେ ରହିଲେ ।

ମୃତବ୍ୟାଘ୍ର ଦେଖି ରାଜା ଓ ରାଜଧାନୀର ନରନାରୀ ଜାଣିଗଲେ ଯେ, ଭୀମସେନ ଏକାକୀ ଏ ବ୍ୟାଘ୍ରକୁ ବଧ କରିଅଛନ୍ତି । ତାହାଙ୍କ ସାହସ ଓ ବୀରତ୍ୱର ପ୍ରଶଂସା ସମସ୍ତେ କରିବାକୁ ଲାଗିଲେ । ରାଜା ପ୍ରୀତ ହୋଇ ବହୁ ଧନରତ୍ନ ଉପହାର ଦେଲେ । ଭୀମସେନ ବିଜୟଗର୍ବରେ ଉତ୍‌ଫୁଲ୍ଲ ହୋଇ ଗ୍ରାମବାସୀଙ୍କ ପ୍ରଦତ୍ତ ଅର୍ଥ ଓ ରାଜାଙ୍କ ଉପହାର ଧନରତ୍ନ ଧରି ନିଜ ବାସସ୍ଥାନକୁ ଫେରି ଆସିଲେ ।

ଚନ୍ଦ୍ରଧନୁର୍ଦ୍ଧାରୀ ତାଙ୍କୁ ଦେଖି କହିଲେ, "ଦେଖ, ତୁମେ ବ୍ୟାଘ୍ରର ନାମ ଶୁଣି ଏ ସ୍ଥାନ ତ୍ୟାଗ କରି ପଳାଇଯିବ ବୋଲି ଚିନ୍ତା କରୁଥିଲ । ମାତ୍ର ମୋର ପରାମର୍ଶକ୍ରମେ କାର୍ଯ୍ୟ କରିବାରୁ କିପରି ଯଶଗୌରବରେ ମଣ୍ଡିତ ହେଲ ଏବଂ ଏତେ ଧନରତ୍ନ ପାଇଲ ।"

ଏହାର କେତେକ ଦିନ ପରେ ରାଜ୍ୟରେ ଗୋଟିଏ ଅରଣ୍ୟ ମହିଷିର ଉପଦ୍ରବ ବଢ଼ିଗଲା । ପ୍ରଜାମାନେ କ୍ଷତଗ୍ରସ୍ତ ଓ ବ୍ୟତିବ୍ୟସ୍ତ ହୋଇ ରାଜଦରବାରରେ ଗୁହାରି କଲେ । ରାଜା ସେମାନଙ୍କୁ ଆଶ୍ୱାସନା ଦେଇ ପୂର୍ବପରି ଭୀମସେନଙ୍କୁ ମହିଷି ଉପଦ୍ରବର ପ୍ରତିକାର କରିବା ଲାଗି ଘଟଣାସ୍ଥଳକୁ ପଠାଇଲେ । ବ୍ୟାଘ୍ର-ଶିକାର ବେଳେ ଯେଉଁ କୌଶଳରେ ଭୀମସେନ ଜୟୀ ହୋଇଥିଲେ, ଏତେବେଳେ ମଧ୍ୟ ସେହିପରି କୌଶଳ କଲେ । ଲୋକମାନେ ମହିଷିକୁ ନିଜର ଜୀବନରକ୍ଷା ଉଦ୍ଦେଶ୍ୟରେ ମାରିପକାଇବା କ୍ଷଣି ଭୀମସେନ ଗୋପନ ସ୍ଥାନରୁ ବାହାରି ଆସି ବହୁ ତମ୍ବିତୋଫାନ କଲେ ଏବଂ କହିଲେ "ଏହାକୁ ଜୀବନ୍ତ ଧରିନେବା ପାଇଁ ମୁଁ ପ୍ରସ୍ତୁତ ହେଉଥିଲି । ଏପରି ଅବସ୍ଥାରେ ତମେ ଏହାକୁ ମାରିଦେଲ କାହିଁକି ?"

ଲୋକମାନେ ମଧ୍ୟ ଭୀମସେନର ଛଳନାପୂର୍ଣ୍ଣ କଥା ବୁଝି ନ ପାରି ତାହା ସତ ବୋଲି ମନେକଲେ ଏବଂ ରାଜକ୍ରୋଧରୁ ରକ୍ଷାପାଇବା ଲାଗି ଭୀମସେନଙ୍କୁ ନାନା ଉପହାର ଦେଇ ସନ୍ତୁଷ୍ଟ କରାଇଲେ ।

ମଇଁଷିର ମୃତଦେହ ସଙ୍ଗରେ ଧରି ଭୀମସେନ ରାଜଧାନୀକୁ ଫେରିଲେ । ରାଜା ଓ ରାଜଧାନୀର ଲୋକମାନେ ପୂର୍ବପରି ଭୀମସେନଙ୍କ ସାହସ ଓ ବୀରତ୍ୱର ପ୍ରଶଂସା କରିବାକୁ ଲାଗିଲେ । ରାଜା ନିଜ ଗଳାର ଚନ୍ଦ୍ରହାର ତାଙ୍କୁ ଉପହାର ଦେଲେ ।

ବହୁ ଧନସମ୍ପତ୍ତି ପାଇ ଏବଂ ମିଥ୍ୟା ଯଶରେ ଗୌରବାନ୍ୱିତ ହୋଇ ଭୀମସେନଙ୍କ ଗର୍ବ ବହୁତ ବେଶି ହୋଇଗଲା । ସେ ମନରେ ଭାବିଲେ, "ମୁଁ ପ୍ରକୃତ ବୀର ଓ ସାହସୀ । ଚୁଲ୍ଲଧନୁର୍ଦ୍ଧାରୀ ଗୃହମଧ୍ୟରେ ବସିରହି ମୋ ଅର୍ଜିତ ଧନସମ୍ପତ୍ତିରେ ବୃଥା ଭାଗୀଦାର ହେଉଅଛି । ତାକୁ ଏଠାରୁ ବିଦାୟ କରିଦେବା ଉଚିତ ।"

ଭୀମସେନଙ୍କ କଥାବାର୍ତ୍ତା ଓ ଭାବଭଙ୍ଗୀରୁ ଚୁଲ୍ଲଧନୁର୍ଦ୍ଧାରୀ ତାଙ୍କ ମନୋଭାବ ବୁଝି ପାରିଲେ । ଧନସମ୍ପତ୍ତି ଓ ମିଥ୍ୟା ଯଶ ଲୋକକୁ ଗର୍ବୀ କରେ, ତାହା ଜାଣି ସେ ମନେମନେ ଭାବିଲେ, "ଗର୍ବ ହିଁ ମନୁଷ୍ୟର ପତନର ପ୍ରଥମ ପାହାଚ । ଭୀମସେନ ମୋ ଲାଗି ଏ ଧନସମ୍ପତ୍ତି ଓ ଯଶଗୌରବ ପାଇଥିଲେ ମଧ୍ୟ ମୋତେ ଆଜି ସ୍ୱୀକାର କରିବାକୁ ନାରାଜ । ତାହାର ଏ ଖ୍ୟାତି ଆଉ ବେଶି ଦିନ ରହିବ ନାହିଁ, ତାହା ଏଥିରୁ ସୂଚିତ ହୁଏ ।

କିଛି ଦିନ ପରେ କୋଶଳରାଜ ବାରାଣସୀ ରାଜ୍ୟ ଆକ୍ରମଣ କଲେ । କୋଶଳରାଜଙ୍କ ସୈନ୍ୟସଂଖ୍ୟା ବହୁତ ବେଶି ଏବଂ ସେମାନେ ଯୁଦ୍ଧବିଦ୍ୟାବିଶାରଦ । କୋଶଳରାଜ ଆକ୍ରମଣ କରିବାର ଶୁଣି ରାଜା ବ୍ରହ୍ମଦତ୍ତ ଭୀମସେନଙ୍କୁ ଡକାଇ ପଠାଇଲେ ଏବଂ ତାଙ୍କୁ

ପ୍ରଧାନ ସେନାପତିପଦରେ ନିଯୁକ୍ତ କରି ଯୁଦ୍ଧକ୍ଷେତ୍ରକୁ ପଠାଇଲେ । ଚୂଳ୍ଳଧନୁର୍ଦ୍ଧାରୀ ତାଙ୍କର ସେବକ ହିସାବରେ ତାଙ୍କ ସଙ୍ଗରେ ଗଲେ ।

ବହୁ ସୈନ୍ୟପରିବେଷ୍ଟିତ ଭୀମସେନ ବୀରବେଶରେ ସଜ୍ଜିତ ହୋଇ ହସ୍ତୀପୃଷ୍ଠରେ ବସି ଯୁଦ୍ଧକ୍ଷେତ୍ରକୁ ଗଲାବେଳେ ଗର୍ବରେ ତାଙ୍କ ମନ କୁଣ୍ଢେମୋଟ ହୋଇଗଲା । ସେ ମନେମନେ କଳ୍ପନା କଲେ, ମୁଁ ଅତି ଅଳ୍ପ ସମୟ ମଧ୍ୟରେ କୋଶଳରାଜଙ୍କ ସମସ୍ତ ସୈନ୍ୟଙ୍କୁ ହତ୍ୟା କରିଦେବି । ସୁବିଧା ପାଇଲେ କୋଶଳରାଜଙ୍କୁ ମଧ୍ୟ ବନ୍ଦୀ କରି ଘେନି ଆସିବି । ସେତେବେଳେ ବାରାଣସୀରାଜ ମୋ ଉପରେ ଅତିଶୟ ପ୍ରୀତ ହୋଇ ହୁଏତ ମୋତେ ଅର୍ଦ୍ଧରାଜ୍ୟ ପ୍ରଦାନ କରିପାରନ୍ତି । ରାଜ୍ୟବାସୀଙ୍କ ଭିତରେ ମୋ ଖ୍ୟାତି ଏତେ ବଢ଼ିଯିବ ଯେ, ସେମାନେ ମୋତେ ଦେବତା ସଦୃଶ ପୂଜା କରିବେ ।

ଚୂଳ୍ଳଧନୁର୍ଦ୍ଧାରୀ ଭୀମସେନଙ୍କ ପାଖରେ ହସ୍ତୀପୃଷ୍ଠରେ ବସିଥାଆନ୍ତି । ସେ ଭୀମସେନଙ୍କ ମନର କଥା ତାଙ୍କ ଭାବଭଙ୍ଗୀରୁ ବୁଝିପାରି ମନେମନେ ହସୁଥାଆନ୍ତି ।

କ୍ରମେ ସୈନ୍ୟଫଉଜ ଆସି ଯୁଦ୍ଧକ୍ଷେତ୍ରରେ ପହଞ୍ଚିଲେ । ଭୀମସେନ ସୈନ୍ୟଦଳର ଆଗରେ ଥିଲେ । ସମ୍ମୁଖଭାଗରେ କୋଶଳରାଜଙ୍କର ଅଗଣିତ ସୈନ୍ୟ ସମାବେଶ ଓ ଅସଂଖ୍ୟ ଅଶ୍ୱହସ୍ତୀ ଦେଖି ଏବଂ ଯୁଦ୍ଧବାଦ୍ୟ ସହ ସେମାନଙ୍କ ରଣହୁଙ୍କାର ଶୁଣି ତାଙ୍କର ପୂର୍ବର ସମସ୍ତ କଳ୍ପନାଜଳ୍ପନା ଲୋପ ପାଇଗଲା । ସେ ଭୟରେ ଥରିବାକୁ ଲାଗିଲେ । ଯେ ଜୀବନରେ କେବେ ହେଲେ ଯୁଦ୍ଧକ୍ଷେତ୍ର ଦେଖି ନାହାନ୍ତି, ସେ ସେନାପତି ରୂପେ ସୈନ୍ୟଚାଳନା ବା କରନ୍ତେ କିପରି ?

ଭୀମସେନଙ୍କର ଏପରି ଅବସ୍ଥା ଦେଖି ଚୁଲ୍ଲିଧନୁର୍ଦ୍ଧାରୀ ପ୍ରମାଦ ଗଣିଲେ । ସେ ଭୀମସେନଙ୍କୁ ପୃଷ୍ଠଭାଗରେ ରଖି ଧନୁଶର ଧରି ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ ଓ ନିଜେ ଶର ନିକ୍ଷେପ କଲେ । ଭୀମସେନ ଅତିଶୟ ଭୟପାଇ କାଳେ ହସ୍ତୀପୃଷ୍ଠରୁ ଖସି ପଡ଼ିବେ, ସେହି ଆଶଙ୍କାରେ ସେ ତାଙ୍କୁ ହାଉଦାସହିତ ଦୃଢ଼ଭାବରେ ବାନ୍ଧିଦେଲେ ।

ଯୁଦ୍ଧ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଭୀମସେନ ଭୟରେ ମୃତ-ପ୍ରାୟ ହୋଇଗଲେ । ମଳମୂତ୍ର ତ୍ୟାଗ କରି ହସ୍ତୀ ପୃଷ୍ଠକୁ ଆବର୍ଜନା-ପୂର୍ଣ୍ଣ କରିଦେଲେ । ତାଙ୍କ ଅବସ୍ଥା ଦେଖି ଚୁଲ୍ଲିଧନୁର୍ଦ୍ଧାରୀ ଓ ସଙ୍ଗରେ ଥିବା ସୈନ୍ୟମାନେ ପ୍ରମାଦ ଗଣିଲେ ।

"ଭୀମସେନ ! କାହିଁଗଲା ଅଗର ବଢ଼ାଇ ?
ବୀରତ୍ୱ, ସାହସ ଦର୍ପ ନେଲା କେ ଛଡ଼ାଇ ?
ବ୍ୟାଘ୍ର ମାରି ଲଭିଥିଲ ଯଶ ଖ୍ୟାତି ଧନ,
ତହିଁ ବଳି ଗର୍ବେ ପୂର୍ଣ୍ଣ ଥିଲା ତୁମ୍ଭ ମନ ।
ଧରା ମଣୁଥିଲ ସରା ମିଛେ ହୋଇ ବାଇ
ଦେଖୁ ଦେଖୁ ଯୁଦ୍ଧକ୍ଷେତ୍ରେ ଗଲା ତାହା କାହିଁ ।
ମୁହେଁ ଗର୍ବ ପଛେ ମଳମୂତ୍ର ଆବର୍ଜନା
କପଟ ସାହସ ଏହା ପଡ଼େ ନାହିଁ ଜଣା ।
ନ ବୁଝି ନିଜର ଶକ୍ତି ଗର୍ବ କଲେ ମନେ
ଏହିପରି ଲୋକହସା ହୋଇଥାନ୍ତି ଜନେ ।"

ବହୁ ସୈନ୍ୟଙ୍କ ସହ ନିରାପଦରେ ତାଙ୍କୁ ରାଜଧାନୀକୁ ପଠାଇଦେଇ ଚୁଲ୍ଲିଧନୁର୍ଦ୍ଧାରୀ ଯୁଦ୍ଧ ପରିଚାଳନା କଲେ । ତାଙ୍କ ବୀରତ୍ୱ ଓ କୌଶଳପୂର୍ଣ୍ଣ ଯୁଦ୍ଧ ଯୋଗେ ଶତ୍ରୁ ସୈନ୍ୟ ଅଳ୍ପସମୟ

ମଧ୍ୟରେ ପରାସ୍ତ ହୋଇ ପଳାଇଗଲେ । ବାରାଣସୀ ସୈନ୍ୟମାନେ ବିଜୟୀ ହୋଇ ନିଜ ରାଜଧାନୀକୁ ଫେରିଲେ ।

ରାଜା ଦେଖିଲେ, ସୈନ୍ୟମାନଙ୍କ ସେନାପତି ରୂପେ ଭୀମସେନ ଯାଇଥିଲେ । ମାତ୍ର ଫେରିବା ସମୟରେ ସେ ନାହାନ୍ତି, ତାଙ୍କର ସେବକ କ୍ଷୁଦ୍ରକାୟ ବାମନ ସେନାପତି ପଦରେ ଅଧିଷ୍ଠିତ ଅଛନ୍ତି । ସେ ଏହାର ତଥ୍ୟବୁଝି ନ ପାରି ସୈନ୍ୟମାନଙ୍କୁ ପଚାରିଲେ । ସୈନ୍ୟମାନେ ଯୁଦ୍ଧକ୍ଷେତ୍ରରେ ଭୀମସେନଙ୍କ ଦଶା ଭୋଗ କଲେ, ଏହି ବାମନ କିପରି ଦକ୍ଷତାର ସହ ଯୁଦ୍ଧ ପରିଚାଳନା କରି ଜୟଲାଭ କଲେ, ତାହା ବର୍ଣ୍ଣନା କଲେ । ଚୂଲ୍ଲଧନୁର୍ଦ୍ଧାରୀ ମଧ୍ୟ ଆଉ ନିଜକୁ ଗୋପନ ନ ରଖି ଭୀମସେନଙ୍କ ପ୍ରକୃତ ପରିଚୟ ପ୍ରକାଶ କଲେ ।

ରାଜା ଚୂଲ୍ଲଧନୁର୍ଦ୍ଧାରୀଙ୍କ ପରିଚୟ ପାଇ ଓ ତାଙ୍କର ବୀରତ୍ୱରେ ମୁଗ୍ଧ ହୋଇ ତାଙ୍କୁ ରାଜ୍ୟର ସେନାପତି ପଦରେ ବରଣ କଲେ । ଭୀମସେନ ତାଙ୍କ ନିକଟରେ ଆଶ୍ରିତ ପରି ସବୁ ଦିନ ରହିଲେ ।

ତା ପରେ ରାଜ୍ୟ ଉପରକୁ ଯେତେ ବାଧା ବିପଦ ଆସିଛି, ଶତ୍ରୁମାନେ ଯେତେ ଥର ରାଜ୍ୟ ଆକ୍ରମଣ କରିଛନ୍ତି, ସେ ସବୁ ଥର ଚୂଲ୍ଲଧନୁର୍ଦ୍ଧାରୀ ଯୁଦ୍ଧକରି ଯଶସ୍ୱୀ ହୋଇଥିଲେ । ରାଜ୍ୟ, ରାଜା ଓ ରାଜ୍ୟବାସୀ ତାଙ୍କ ଯୋଗେ ନିରାପଦରେ ଓ ଶାନ୍ତିରେ ସମୟ କଟାଇ ତାଙ୍କୁ ଧନ୍ୟଧନ୍ୟ କହିବାକୁ ଲାଗିଲେ ।

---

ମୁଦ୍ରାକର—